ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ମାସିକ ସାହିତ୍ୟ ଇ-ପତ୍ରିକା

# ଆସ୍ୱାଦ

ଅପ୍ରେଲ ୨୦୧୫ ସଂସ୍କରଣ



## ବାସ୍ନା ବାସ୍ନା ସ୍ୱପ୍ନ ଓ ଅମାବାସ୍ୟା ରାତ୍ରି

## ସଂସ୍କୃତିର ପରିଭାଷା

## ସ୍କିଜୋଫ୍ରେନିଆ

## ଶ୍ରୀମନ୍ଦିରରେ ନବକଳେବର

ଦଶମ ବର୍ଷ, ଚତୁର୍ଥ ସଂଖ୍ୟା
ଅପ୍ରେଲ ୨୦୧୫

www.aahwaan.com

# ଆହ୍ୱାନ

ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟ ଇ-ପତ୍ରିକା

ପ୍ରତିଷ୍ଠାତା - ସମ୍ପାଦକ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍., ପି.ଜି.ଡ଼ି,ଏମ୍.ସି.ଏଚ୍, ପି.ଜି.ଡ଼ି.ଏଚ୍.ଏମ୍

ବୀମା ନଗର, ଦ୍ୱିତୀୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଫୋନ୍ : ୯୦୪୦୯୮୫୪୬୩ ଇ-ମେଲ୍ : aahwaan@gmail.com

'ଆହ୍ୱାନ'ରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖାଗୁଡ଼ିକୁ ହିଁ କପିରାଇଟର ବ୍ୟବସ୍ଥାରେ ଚୟନ କରାଯାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହିବ ନାହିଁ, ଯେତେବେଳଯାଏଁ କୌଣସି ସୂଚନା କିମ୍ବା ନିର୍ଦ୍ଦେଶ ଦିଆଯାଇନାହିଁ । ଲେଖାରେ ଦିଆଯାଇଥିବା ବିଗ୍ଚାର ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ, ତାହା ଉପରେ ସମ୍ପାଦକ କିମ୍ବା ପ୍ରକାଶକଙ୍କ ସହମତ ରହିବ ବୋଲି କୌଣସି ଲିଖିତ ନିୟମ ନାହିଁ । ଯଦିଓ ସମ୍ପାଦକ ସବୁ ଲେଖାକୁ ଭଲଭାବରେ ପଢ଼ିବା ଏବଂ ବୁଝିବା ପରେ ହିଁ ପ୍ରକାଶିତ କରିଥାନ୍ତି । ତଥାପି ଲେଖାର ଶତପ୍ରତିଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବିବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କିମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ନାହିଁ ।

ଏହି ପତ୍ରିକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲିଖିତ ଅନୁମତି ବିନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରିକା / ଗଣ ମାଧ୍ୟମ / ସମ୍ବାଦପତ୍ର ଇତ୍ୟାଦି)ରେ ପ୍ରକାଶିତ କରିବା ଏକ ଅପରାଧ । ଦୟାକରି ଏହି ବିଷୟ ପ୍ରତି ବିଶେଷ ଧ୍ୟାନ ଦେବେ । ଲେଖକମାନେ ଚାହିଁଲେ ନିଜ ଲେଖାର ପ୍ରଚାର ହେତୁ ସେମାନଙ୍କ ଲେଖା ପ୍ରକାଶିତ ହୋଇଥିବା ପୃଷ୍ଠାମାନଙ୍କ ପ୍ରତିଛବି ଗଣମାଧ୍ୟମରେ / ଇଣ୍ଟରନେଟରେ ଦେଇ ପାରିବେ ।

# ସମ୍ପାଦକୀୟ

ଆଉ ଆଜ୍ଞା ଏଠି ରହହେବନ । ବରକ୍ତ ପ୍ରକାଶ କର କହୁଥିଲେ ଜଣେ ସହକର୍ମୀ । କହଲେ, ଆମେ ସକାଳୁ ସଞ୍ଜଯାଏଁ ଖଟିବା ଆଉ ଯାହା ଦରମା ପାଇବା ସେଥିରୁ ଭାଗଟେ କାଟି ସରକାରଙ୍କୁ କର / ଟାକ୍ସ ଭାବରେ ଦେବା, କନ୍ତୁ ଆମେ ସେଇ କର ବନମୟରେ ପାଇବା କଣ ? ସରକାରଙ୍କ ଖାଦ୍ୟ ଯୋଗାଣ ବଭାଗ ତରଫରୁ ଆଗ ଆମକୁ ବ ଚନ, କରୋସିନ ମିଳୁଥିଲା ହେଲେ ଏବେ ସେ ସବୁ ଆଉମିଳୁନ । ଚାଉଳ, ଗହମ କଥା ଛାଡ଼ନ୍ତୁ । ବଜାରରେ ଏ ସବୁ ଜନଷର ଦର ଯାହା ହେଲାଣି ସେ ସବୁକୁ ଅଟକେଇବା ଭଳ ସାମର୍ଥ୍ୟ କୌଣସି ସରକାରଙ୍କ ପାଖରେ ନାହିଁ । ଆମେ ଚାଉଳ କଣୁଚୁ,



କଲୋ ଚାଳଶି ଟଙ୍କାରେ ଆଉ ଆମ ଦେଉଥିବା ଟାକ୍ସ ପଇସାରେ ସରକାର ସମାଜର ଏକ ବଡ଼ ଭାଗର ଲୋକଙ୍କୁ ମାଗଣାରେ ଦେଲା ଭଳ କଲୋ ଏକ ଟଙ୍କା ହସାବରେ ଚାଉଳ ଦେଉଛନ୍ତ । ଯେଉଁମାନେ ଟାକ୍ସ ଦେଇପାରବେ ସେମାନେ ସବୁ କଛ କଣି ପାରବେ ନ୍ୟାୟରେ ଆମପାଇଁ କେହ ସାହା ଭରସା ନାହିଁ । ନଜ ପାଇଁ ଘର ଖଣ୍ଡିଏ କରବା ସ୍ୱପ୍ନ ଦେଖିବା ଅସମ୍ଭବ ଲାଗିଲାଣି । ବ୍ରହ୍ମପୁର ସହରରେ ବର୍ଗଫୁଟ ଚାରହଜାର ଉପରେ ହେଲାଣି ? ବମ୍ବେ ଦଲ୍ଲୀରେ ଶସ୍ତାରେ ଘର ମିଳୁଛ, ଏଠି ଏମିତ କଣ ଅଛ ଯେ ବଲ୍ଡ଼ରମାନେ ଏତେ ଏତେ ଟଙ୍କା ଦାବୀ କରୁଛନ୍ତ ? ଦୁଇବଖରାର ଫ୍ଲାଟ୍ ଟିଏ କଣିଲେ ଚାଳଶି ଲକ୍ଷଟଙ୍କା ? ମାନେ ଆମେ ଆଉ କେବେ ଘର କରପାରବୁ କ ନାହିଁ କହ ହେଉନ, ଅଥଚ ଯେଉଁମାନେ ଚାକରୀ କରୁନାହାନ୍ତ, ସେମାନଙ୍କୁ ସରକାର ମାଗଣାରେ ଜମି ଆଉ ଘର ତଆର ପାଇଁ ଟଙ୍କା ଦେଉଛନ୍ତ ? ଏହା କେଉଁ ପ୍ରକାରର ନ୍ୟାୟ ? ଏହା କଣ ସାମ୍ୟବାଦର ଆଧାର ?

ଆଧାରରୁ ଗୋଟିଏ କଥା ମନେ ପଡ଼ିଲା, 'ଆହାର' । ସରକାରଙ୍କ ଏକ ନୂଆ ଉପହାର । ଉତ୍କଳ ଦିବସରେ ଓଡ଼ିଶାର ଗରୀବ ମାନଙ୍କୁ ମାତ୍ର ପାଞ୍ଚ ଟଙ୍କାରେ ଭାତ ଡାଲମା ବ୍ୟବସ୍ଥା । ରାଜ୍ୟର ଅନେକ ପ୍ରମୁଖ ସହରରେ ଏହି ବ୍ୟବସ୍ଥା ଆମ ପ୍ରିୟ ସରକାର ଅପ୍ରେଲ ପହିଲାରୁ ଆରମ୍ଭ କରିଦେଇଛନ୍ତି । ଅତ୍ୟନ୍ତ ଉତ୍ସାହଜନକ ବ୍ୟବସ୍ଥା । ରାଉରକେଲାରୁ ଜଣେ ବନ୍ଧୁ ଗୋଟିଏ ଫୋଟୋ ଦେଇଥିଲେ ସେଠାରେ ଖୋଲିଥିବା ଆହାର କେନ୍ଦ୍ରର । କେନ୍ଦ୍ର ସାମନାରେ ହୋଇଥିବା ଲମ୍ବା ଧାଡ଼ିକୁ ଦେଖିଲେ ଲାଗୁନଥିଲା ସେଥିରେ କେହି ଗରିବ ଥିବେ । ସ୍କୁଲ ପିଲାଠାରୁ ଆରମ୍ଭ କରି ହେଲମେଟ୍ ଧରି ଠିଆ ହୋଇଥିବା ଯୁବକ, କାନ୍ଧରେ ଅତ୍ୟାଧୁନିକ ବ୍ୟାଗ ଧରିଥିବା ଲୋକ, ସଫା ପୋଷାକପତ୍ରରେ ସମୃଦ୍ଧ କିଛି ଲୋକ । ଏମାନେ କଣ ଗରୀବ ? ଏମିତି ବି ଖବର ଆସିଲା ଯେ ଆହାର କେନ୍ଦ୍ରରେ ଖାଇବା ପାଇଁ ଆସୁଥିବା ଲୋକମାନେ ଚାରିଚକିଆ ଯାନରେ ଆସି କେନ୍ଦ୍ରଠାରୁ ଦୂରରେ ଗାଡ଼ି ରଖିଦେଇ ଆହାର କେନ୍ଦ୍ରରେ ପାଞ୍ଚଟଙ୍କିଆ ଭୋଜନ କରିବାପାଇଁ ଆସୁଛନ୍ତି । ଭଲ ବ୍ୟବସ୍ଥା ଟିଏ କରିଛନ୍ତି ଆମ ସରକାର ।

ଓଡ଼ିଶା ସ୍ୱାଧୀନ ହୋଇଥିଲା ୧୯୩୬ ମସିହାରେ ଏବଂ ବର୍ତ୍ତମାନ ୨୦୧୫ ମାନେ ପ୍ରାୟ ଅଶି ବର୍ଷ ବିତିଗଲାଣି । ହେଲେ ଏତେ ବର୍ଷରେ କଣ ପରିବର୍ତ୍ତନ ହୋଇଛି ? ଆମ ରାଜ୍ୟ ଖଣିଜ ସମ୍ପଦରେ ପରିପୂର୍ଣ୍ଣ ରାଜ୍ୟ ବୋଲି ସମସ୍ତେ ଜାଣନ୍ତି, ଆମେ ବି ପିଲାଦିନୁ ଖଣି, ଖଦାନ, କୋଇଲିଆରୀ କଥା ଶୁଣି ଶୁଣି ବଡ଼ ହୋଇଛୁ । ସ୍କୁଲରେ ପଢୁଥିବା ବେଳେ ଆମ ଶିକ୍ଷକମାନେ ଆମକୁ କହିଥିଲେ ଦିନ ଆସିବ ଓଡ଼ିଶାରେ ସୁନା ଫଳିବ, ଆମ ମାଟି ଭାରି ଉର୍ବର, ଭଲ ଚାଷବାସ ହୁଏ । ଖୋଳିଲେ ଖଣିଜ ମିଳେ, ଖୋଜିଲେ ଅଜସ୍ର ବନସମ୍ପଦ ମିଳେ, ଉପକୂଳ ୪୫୦ କମିରୁ ଅଧିକ, ସାମୁଦ୍ରିକ ଦ୍ରବ୍ୟର ପ୍ରଚୁରତା ଏଠି । ହେଲେ ଅଶିବର୍ଷ ପରେ ଏବେ ବି ଆମ ରାଜ୍ୟର ଲୋକଙ୍କୁ ଏକ ଟଙ୍କିଆ ଚାଉଳ ଆଉ ପାଞ୍ଚ ଟଙ୍କିଆ ଭାତଡାଲମା ଦରକାର ପଡୁଛି କାହିଁକି ? ରାଜ୍ୟ ସରକାର ରୋଜଗାର ପାଇଁ ଭିତ୍ତିଭୂମି ବୃଦ୍ଧି ନକରି, ଲୋକଙ୍କୁ ମାଗଣାରେ ଏହି ସବୁ ଜିନିଷ ଦେଇ ଦେଇ ଦିନକୁ ଦିନ ଆମ ଲୋକଙ୍କୁ କର୍ମକୋଢ଼ିଆ କରାଇ ଦେଉନାହାନ୍ତି କି ?

ଚାଷବାସ କରିବାପାଇଁ କୁଶଳୀ କାରିଗର ନାହାନ୍ତି, ଗାଁଗଣ୍ଡାରେ ସମସ୍ତେ ବିପିଏଲ୍ ପରିବାର ବୋଲି ନିଜକୁ ସିଦ୍ଧ କରିସାରିଲେଣି । ମାସିକ ୩୫ କେଜି ଚାଉଳ ମାତ୍ର ଏକ ଟଙ୍କା ହିସାବରେ ପାଉଛନ୍ତି ଯେତେବେଳେ ସେମାନେ ଆଉ କାମ କରିବାକୁ ଯିବେ କାହିଁକି ? ବିଜୁ ଗ୍ରାମ ଜ୍ୟୋତି ଯୋଜନାରେ ଘରକୁ ବିଜୁଳି ମିଳୁଛି, ଇନ୍ଦିରା ଆବାସ ଯୋଜନାରେ ଘର ମିଳୁଛି, ଏମନରେଗାରେ କିଛି କିଛି କାମ ମିଳିଯାଉଛି । ବାସ ତା ହେଲେ ଆଉ କୌଳିକ ବୃତ୍ତିକରିବା କାହିଁକି ? ଗାଁ ଗଣ୍ଡାରେ ଯେଉଁ କିଛିଲୋକଙ୍କ ପାଖରେ ଚାଷଜମି ଅଛି ସେମାନେ ଚାଷ କରିବାପାଇଁ ଚଷା ପାଉନାହାନ୍ତି, ଧାନ ରୋଇବା ହେଉ ବା କାଟିବା ହେଉ, ଜମି ହଳ କରିବା ହେଉ, କୌଣସି କାମ ପାଇଁ ଲୋକ ମିଳୁନାହାନ୍ତି ।

ଏହିପରି ଅବସ୍ଥାରେ ବର୍ତ୍ତମାନ ସରକାରଙ୍କ ସଦ୍ୟ ପ୍ରସ୍ତୁତ ପାଞ୍ଚଟଙ୍କାରେ ଭାତ ଡାଲମା ପୁଣି ଥରେ ଆମ ରାଜ୍ୟର ଅର୍ଥନୀତିକୁ ପ୍ରଭୂତ କ୍ଷତି ନିଶ୍ଚୟ ଘଟାଇବ ଏଥିରେ ଦ୍ୱିମତ ନାହିଁ । ସହରାଞ୍ଚଳରେ ରହୁଥିବା ଗରିବ ଶ୍ରେଣୀ ଲୋକଙ୍କ ପାଇଁ ଏହି ବ୍ୟବସ୍ଥା କରିଛନ୍ତି ଆମ ସରକାର । ପ୍ରତିଦିନ ଦ୍ୱିପହର ୧୧ଟାରୁ ସନ୍ଧ୍ୟା ୩ଟା ପର୍ଯ୍ୟନ୍ତ ମାତ୍ର ପାଞ୍ଚ ଟଙ୍କାରେ ଭାତ ଓ ଡାଲମା ଖାଇବାକୁ ଦେବା ବ୍ୟବସ୍ଥା କରାଯାଇଛି । ଅନ୍ୟ ସହର ମାନଙ୍କ କଥା ମୁଁ ଜାଣେନି, ହେଲେ ଖୋଦ୍ ବ୍ରହ୍ମପୁର ସହର ଭିତରେ ଚାରୋଟି ସ୍ଥାନରେ ଏହି ବ୍ୟବସ୍ଥା ହୋଇଛି । ଏହା ଫଳରେ ଯେଉଁ କେତେଜଣ କର୍ମକୋଢ଼ିଆ ସରକାର ସୃଷ୍ଟି କରିଛନ୍ତି ସେମାନେ ନିଶ୍ଚୟ ଭାବେ ଉପକୃତ ହେବେ, ହେଲେ ଏହାର ସୁଦୂରପ୍ରସାରି ପ୍ରଭାବ କଥା କେହି ଚିନ୍ତା କରିନାହାନ୍ତି ।

ସାଧାରଣତଃ ବ୍ରହ୍ମପୁର ସହରରେ ହୋଟେଲ ମାନଙ୍କ ସଂଖ୍ୟା ରାଜ୍ୟର ଅନ୍ୟ ସହର ତୁଳନାରେ ବହୁତ ଅଧିକ । ଯେକୌଣସି ବ୍ୟକ୍ତି ନିର୍ଦ୍ୱନ୍ଦରେ ମାନିବ ଯେ ବ୍ରହ୍ମପୁରରେ ଖାଇବା ଜିନିଷ ବହୁତ ଶସ୍ତା ଓ ସହଜରେ ଉପଲବ୍‌ଧ । ମାତ୍ର ପଚିଶିରୁ ତିରିଶି ଟଙ୍କାରେ ଖାଇବାକୁ ଲୋକମାନେ ପାଉଥିଲେ, ଏହା ଦ୍ୱାରା ଲୋକମାନେ ବି ଉପକୃତ ହେଉଥିଲେ ଏବଂ ଏହି ବ୍ୟବସାୟ ଦ୍ୱାରା ଅନେକ ବ୍ୟାପାରୀ ମଧ୍ୟ ନିଜର ଜୀବିକାନିର୍ବାହ କରୁଥିଲେ, ହେଲେ ପାଞ୍ଚଟଙ୍କିଆ ଆହାର ଆସିବା ପରେ ଲୋକମାନେ ଆଉ କେହି ଏହି ଛୋଟ ହୋଟେଲ ମାନଙ୍କୁ ଯିବେନାହିଁ । ବ୍ରହ୍ମପୁର ସହରର ରେଳୱେ ଷ୍ଟେସନ, ପୁରୁଣା ଓ

ନୂଆ ବସଷ୍ଟାଣ୍ଡ ଅଞ୍ଚଳରେ ଥିବା ଅନେକ ହୋଟେଲ ଏହାଦ୍ୱାରା ନିଶ୍ଚୟ ଭାବେ ପ୍ରଭାବିତ ହେବେ ହିଁ ହେବେ । ସେମାନଙ୍କ ଜୀବିକା ଉପରେ ପ୍ରଭାବ ପଡ଼ିବ ହିଁ । ଏହି ବିଷୟରେ କେହି ଚିନ୍ତା କରିଛନ୍ତି କି ?

ପିଲାଦିନେ ବାପା କହୁଥିଲେ, "ପିଲାକୁ ନିଜ ହାତରେ ଖାଇବା ଶିଖାଅ, ନହେଲେ ସେ ସବୁବେଳେ ତୁମ ଉପରେ ନିର୍ଭରଶୀଳ ହୋଇ ରହିଯିବ" । ଆମ ସରକାର ଠିକ୍ ତାହାର ବିପରୀତ କାମ କରୁଛନ୍ତି, ଲୋକଙ୍କୁ କର୍ମନିଯୁକ୍ତି ନଦେଇ ସେମାନଙ୍କୁ ମାଗଣାରେ ଖାଇବା ବ୍ୟବସ୍ଥା କରିଦେଇ ସେମାନଙ୍କ କାମ କରିବାର ଇଚ୍ଛାକୁ ବି ମାରିଦେବାକୁ ବସିଛନ୍ତି । ଦିନ ଆସିବ ଆଉ କେହି ବି ଦିନ ମଜୁରିଆ ମିଳିବେ ନାହିଁ, ଯେଉଁମାନେ ମିଳିବେ ସେମାନେ ମନଇଚ୍ଛା ଦାମ କହିବେ । ଅବସ୍ଥା ଦିନକୁ ଦିନ ଖରାପ ହିଁ ହେବ ସିନା ଆମ ଜାତି ଉନ୍ନତି କରିବ ନାହିଁ ।

ସରକାରଙ୍କୁ ନିବେଦନ ମୁହଁକୁ ଦାନା ନ ଦେଇ ହାତକୁ କାମ ଦିଅନ୍ତୁ ଯାହା ଦ୍ୱାରା ଜଣେ ସ୍ୱାବଲମ୍ବୀ ହୋଇପାରିବ ଏବଂ ନିଜେ ନିଜର ଆଉ ପରିବାରର ପରିପୋଷଣ କରିବାକୁ ସକ୍ଷମ ହେବ । ଦେଶ ସମୃଦ୍ଧ ହେବ । ଏହା ହିଁ ହେବ ପ୍ରକୃତ ଉତ୍କଳ ଦିବସର ଉପହାର ।

ବ୍ରହ୍ମପୁର ସହରର ପ୍ରସିଦ୍ଧ ଠାକୁରାଣୀ ଯାତ୍ରାର ଇତିହାସ ଓ ଆଦ୍ୟଅନ୍ତ ବିଷୟରେ ସଚିତ୍ର ଲେଖାଟିଏ ଏହି ସଂସ୍କରଣରେ ଦିଆଯାଇଛି, ଆଶା କରୁଛି ଏହା ସୁଦୂର ବିଦେଶରେ ରହୁଥିବା ବ୍ରହ୍ମପୁର ବାସୀଙ୍କୁ ଆନନ୍ଦ ଦେବ । ପବିତ୍ର ପଣା ସଂକ୍ରାନ୍ତି ଉପଲକ୍ଷେ ସମସ୍ତ ଓଡ଼ିଶାବାସୀଙ୍କୁ ଅଭିନନ୍ଦନ ଜଣାଇ, ଉପସ୍ଥାପନ କରୁଛି ଚଳିତ ମାସର ଆହ୍ୱାନ ।

ଧନ୍ୟବାଦ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା-ସମ୍ପାଦକ, ଆହ୍ୱାନ ଇ-ପତ୍ରିକା

# ଚଳନ୍ତ ସଂସ୍କରଣରେ...

ଆହ୍ୱାନ ଇ-ପତ୍ରିକାର ଆଗାମୀ ସଂସ୍କରଣ ଆସନ୍ତା ମାସ (ମଇ) ଦଶ ତାରଖରେ ପ୍ରକାଶିତ ହେବ, ନଜ ଲେଖା ପତ୍ରିକାରେ ପ୍ରକାଶିତ କରବା ଇଚ୍ଛୁକ ଲେଖକଲେଖିକା ନଜ ଲଖିତ କୃତକୁ ଆମ ନକଟକୁ ଇମେଲ୍‌ଦ୍ୱାର୍ ପଠାଇ ପାରବେ କମ୍ବା ଚଠିଦ୍ୱାର୍ ପଠାଇ ପାରବେ । ଅଧିକ ସୂଚନା ପାଇଁ ପତ୍ରିକାର ଶେଷ ପୃଷ୍ଠାକୁ ପଢ଼ନ୍ତୁ ।

**http://www.facebook.com/groups/aahwaan**

# ମହାପ୍ରଭୂଙ୍କ ନବକଳେବର !

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



ଚଳିତ ବର୍ଷର ବର୍ଷାଋତୁ ଆସିବା ପୂର୍ବରୁ ରାଜ୍ୟର ପୂର୍ବତଟରେ ଆସିବ ଜନଲହରୀ, ଜୁଲାଇ ମାସରେ ପୁରୀ ଶ୍ରୀକ୍ଷେତ୍ରରେ ପଚିଶ ଲକ୍ଷ ଭକ୍ତଙ୍କ ସମାଗମ ହେବାର ପୂର୍ବାନୁମାନ ସରକାରୀ ସ୍ତରରେ କୁହାଯାଉଛି । ଆଉ ଏହାର କାରଣ ହେଉଛି ମହାପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ନବକଳେବର । ନବଜନ୍ମ ବା ଜନ୍ମ ଓ ମୃତ୍ୟୁ ଏବଂ ମୃତ୍ୟୁପରେ ପୁନର୍ଜନ୍ମ ଧାରଣାକୁ ବଳବତ୍ତର କରିବାପାଇଁ ଶ୍ରୀଜୀଉମାନଙ୍କ ନବକଳେବର ଏକ ଅନନ୍ୟ ଉଦାହରଣ । ଏହି ଉତ୍ସବ ପୁରୀ ସହରକୁ ମଧ୍ୟ ଅନେକାଂଶରେ ପରିବର୍ତ୍ତିତ କରିଦେବ ବୋଲି ଆଶା କରାଯାଉଛି । ୨୦୧୧ ମସିହା ଜନଗଣନା ଅନୁଯାୟୀ ଏହି ସମୁଦ୍ର ଉପକୂଳବର୍ତ୍ତୀ ସହରର ଜନସଂଖ୍ୟା ପ୍ରାୟ ପାଞ୍ଚଲକ୍ଷ ବୋଲି ଅନୁମାନ କରାଯାଉଛି ।

ଜୁଲାଇ ମାସରେ ହେବାକୁ ଥିବା ନବକଳେବରକୁ ଆଖି ଆଗରେ ରଖି ପୁରୀ ସହରର ନବୀକରଣ ଯୋରସୋରରେ ହେଉଛି । ଏବଂ ଏହି ଉତ୍ସବ ସମୟରେ ସହରରେ ଥିବା ଅଗଣିତ ବଜାର, ହୋଟେଲ୍, ଲଜ୍‌, ରେସ୍ତୋରାଂ, ରିକ୍ସାଚାଳକ ଏବଂ ସର୍ବୋପରି ପଣ୍ଡାମାନେ ଭଲ ବ୍ୟବସାୟ କରିବେ ବୋଲି ଆଶାବାନ ହୋଇ ରହିଛନ୍ତି । ଯା ହେଲେ ବି ଉତ୍ସବ ହେଉଛି ଜଗନ୍ନାଥଙ୍କର । ଆଉ ଜଗନ୍ନାଥ ହେଉଛନ୍ତି ହିନ୍ଦୁମାନଙ୍କର ଆରାଧ୍ୟ ଦେବତା । ଏହି ସମୟରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନଙ୍କ ବିଗ୍ରହ ପରିବର୍ତ୍ତନ କରାଯାଇ ନୂତନ ବିଗ୍ରହକୁ ସ୍ଥାପନ କରାଯିବ । ଏହା ହିନ୍ଦୁ ପଞ୍ଜିକା ଅନୁଯାୟୀ ଯେଉଁ ବର୍ଷ ଯୋଡ଼ା ଶ୍ରାବଣ ମାସ ପଡ଼େ ସେଇ ବର୍ଷ ହୁଏ । ଆଉ ଏହି ସୁଯୋଗ ୧୨ରୁ ୧୯ ବର୍ଷରେ ଥରେ ହୋଇଥାଏ । ବିଗତଥର ନବକଳେବର ୧୯୯୬ ମସିହାରେ ହୋଇଥିଲା ।

ଯେତେବେଳେ ଦେବତାମାନଙ୍କ ମୂର୍ତ୍ତି ଏକ ସ୍ୱତନ୍ତ୍ର ପ୍ରକାରର ନିମଗଛର କାଠରେ ତିଆରି ହୋଇଥାଏ, ଯାହାକୁ ଶାସ୍ତ୍ରାନୁଯାୟୀ ଦାରୁବ୍ରହ୍ମ ବୋଲି ମଧ୍ୟ ଅଭିହିତ କରାଯାଇଥାଏ ।

କେବଳ କାଷ୍ଠ ନିର୍ମିତ ପ୍ରତିମା ପରିବର୍ତ୍ତନ ହୁଏନାହିଁ, ବରଂ ପୁରୁଣା ପ୍ରତିମାରୁ ନୂତନ ପ୍ରତିମାକୁ ଏକ ଗୁପ୍ତ ପ୍ରକ୍ରିୟା ଦ୍ୱାରା ବ୍ରହ୍ମ / ଆତ୍ମା ସ୍ଥାନାନ୍ତରଣ କରାଯାଏ ।

ଏହି କାର୍ଯ୍ୟକ୍ରମର ଶୁଭାରମ୍ଭ ଯେଉଁଦିନ ହୁଏ ସେହି ଦିନ ମଧ୍ୟାହ୍ନପରେ ଜଗନ୍ନାଥଙ୍କ ପୂଜାର୍ଚ୍ଚନା କରାଯାଇ ଏକ ୧୨ ଫୁଟ ଲମ୍ବା ଫୁଲମାଳ ବା ଆଜ୍ଞାମାଳ ତିଆରି କରାଯାଏ । ଏହି ମାଳକୁ ଜଗନ୍ନାଥଙ୍କ ସେବକ ପତିମହାପାତ୍ରଙ୍କୁ ଦିଆଯାଏ, ଯେ ଏହାକୁ ନେଇ ଏଠାରୁ ପଚାଶ କିଲୋମିଟର ଦୂରରେ ଥିବା କାକଟପୁର ମଙ୍ଗଳାଙ୍କ ପାଖକୁ ଯାଆନ୍ତି । ରାସ୍ତାରେ ସେମାନେ ପୁରୀ ରାଜାଙ୍କ ନଅରଠାରେ ମଧ୍ୟ କିଛି ସମୟ ପାଇଁ ଅବସ୍ଥାନ କରନ୍ତି, ଯେଉଁଠାରେ ମାଳର ପୂଜାର୍ଚ୍ଚନା କରାଯାଏ ।

ମହାପ୍ରଭୁଙ୍କ ସେବକ ଦଇତାପତି ପ୍ରମୁଖ ମନ୍ଦିରରେ ଅଧିଆ ପଡ଼ନ୍ତି, ଯେତେବେଳେ ମା ମଙ୍ଗଳା ସ୍ୱପ୍ନରେ ଆସି ନବକଳେବର ପାଇଁ ନିର୍ଦ୍ଦିଷ୍ଟ ଦାରୁ ବା ଗଛ କେଉଁଠାରେ ମିଳିବ ତାହା ଜଣାନ୍ତି । ଏହା କୌଣସି ସାଧାରଣ ନିମଗଛ ନୁହେଁ, କାରଣ ଯେହେତୁ ଜଗନ୍ନାଥ କଳା ତେଣୁ ସେଇ ନିମଗଛର ଦାରୁ ବି କଳା ହୋଇଥିବା ଆବଶ୍ୟକ, ଅପରନ୍ତୁ ବଳଭଦ୍ର ଓ ସୁଭଦ୍ରାଙ୍କ ପାଇଁ ଅଲଗା ନିମଗଛ ନିର୍ଦ୍ଧାରଣ ହୁଏ । ନବକଳେବର ପାଇଁ ଆବଶ୍ୟକ ବୃକ୍ଷରେ କେବଳ ଚାରୋଟି ଶାଖା ରହିବା ଆବଶ୍ୟକ, ଯାହା ମହାପ୍ରଭୁଙ୍କ ଚାରିହାତକୁ ଦର୍ଶାଏ । ବୃକ୍ଷ ନିକଟରେ ଜଳସ୍ରୋତ, ଶ୍ମଶାନ ଏବଂ ଉଇହୁଙ୍କା ରହିବା ଆବଶ୍ୟକ । ଏବଂ ବୃକ୍ଷର ଭୂଇଁ ନିକଟରେ ସାପବିଲା ଥିବା ଆବଶ୍ୟକ । ସେହି ବୃକ୍ଷରେ କୌଣସି ପକ୍ଷୀ ଘର କରିନଥିବା ଆବଶ୍ୟକ ।  ଏବଂ ବୃକ୍ଷର କୌଣସି ଶାଖା ହଣାଯାଇନଥିବା ଆବଶ୍ୟକ । ତିନିକୋଣିଆ ଛକ ପାଖରେ ଗଛଟି ଥିବା ଆବଶ୍ୟକ । କିମ୍ବା ବୃକ୍ଷର ତିନିପାର୍ଶ୍ୱରେ ପର୍ବତମାଳା ଥିବା ଦରକାର । ଗଛ ଉପରେ କୌଣସି ଅଲଗା ଗଛ ଉଠିନଥିବ । ଏବଂ ସେଇ ବୃକ୍ଷ ନିକଟରେ ବରୁଣ, ସାହାଡ଼ା ଏବଂ ବିଲ୍ୱ ବୃକ୍ଷ ଥିବା ଆବଶ୍ୟକ । (ଏହି ସବୁ ବୃକ୍ଷ ଆଜିକାଲି ଦେଖିବାକୁ ବିରଳ ।) ଏବଂ ବୃକ୍ଷ ନିକଟରେ ଶିବମନ୍ଦିର ରହିବା ଆବଶ୍ୟକ ।

ଥରେ ଦାରୁ ନିମିତ୍ତ ବୃକ୍ଷ ନିର୍ଦ୍ଧାରଣ ହୋଇଗଲେ, ଏକ ନିର୍ଦ୍ଦିଷ୍ଟଦିନ ପୂଜା କରାଯାଇ ସେଇ ଗଛକୁ କାଟିଦିଆଯାଏ । ଏବଂ ଦାରୁକୁ ବଡ଼ ବଡ଼ ଶଗଡ଼ରେ ମନ୍ଦିର ନିକଟକୁ ଅଣାଯାଏ ।

ରଥଯାତ୍ରାର ତିନିଦିନ ପୂର୍ବରୁ ନବକଳେବର କାର୍ଯ୍ୟକ୍ରମ ହୁଏ, ଯେତେବେଳେ ବ୍ରାହ୍ମଣମାନେ ମହାପ୍ରଭୂଙ୍କ ଜୀବାତ୍ମା ବା ପିଣ୍ଡକୁ ପୁରୁଣା ପ୍ରତିମାରୁ ନୂତନ ପ୍ରତିମାକୁ ସ୍ଥାନାନ୍ତରିତ କରିଥାନ୍ତି । ଏହି କାର୍ଯ୍ୟକ୍ରମ କରୁଥିବା ଦଇତାପତିଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧିଦିଆଯାଏ, ଏବଂ ପିଣ୍ଡ ପରିବର୍ତ୍ତନ ପୂର୍ବରୁ ସମସ୍ତ ଦଇତାପତିଙ୍କ ହାତକୁ ପଛରୁ ବାନ୍ଧିଦିଆଯାଏ । ଦାରୁ ଖୋଜିବା ପାଇଁ ଯାଉଥିବା ଦଇତାପତିମାନେ ଦାରୁ ସନ୍ଧାନ ନ ହେବାଯାଏ, କ୍ଷୌର ନ ହେବାର ପ୍ରଥା ରହିଛି ।

ପିଣ୍ଡ ପରିବର୍ତ୍ତନ ହୋଇଯିବାପରେ, ଦଇତାପତିମାନେ ନିଶାର୍ଦ୍ଧରେ ପୁରୁଣା ପ୍ରତିମା ମାନଙ୍କୁ ନେଇ ଦାହ କରିବାର ପ୍ରଥା ରହିଛି । କୁହାଯାଏ ଯେ ଏହି ଦାହ ସଂସ୍କାର ବେଳେ କୌଣସି ପ୍ରାଣୀ ପୁରୁଣା ମୂର୍ତ୍ତିକୁ ଦେଖିଲେ ପ୍ରାଣ ଚାଲିଯାଏ । ତେଣୁ ଏହାକୁ ସମ୍ପୂର୍ଣ୍ଣ ଅନ୍ଧକାରମୟ ରାତିରେ କରାଯାଏ । ତେଣୁ ଯେଉଁଦିନ ଏହି କାର୍ଯ୍ୟକ୍ରମ କରାଯିବ, ସେଇ ରାତିରେ ସମ୍ପୂର୍ଣ୍ଣ ପୁରୀ ସହରର ବିଦ୍ୟୁତ ସରବରାହ ବନ୍ଦ କରିଦିଆଯିବାର ଯୋଜନା କରାଯାଇଛି ।

ପରିଦିନ ନୂତନ ପ୍ରତିମାମାନଙ୍କୁ ରତ୍ନ ସିଂହାସନରେ ବସାଇ ପୂଜା କରାଯିବ । ଚଳିତ ବର୍ଷ ଏହା ଜୁଲାଇ ୧୬ ତାରିଖରେ କରାଯିବାର ନିର୍ଦ୍ଧାରଣ କରାଯାଇଛି । ଏହାର ଦୁଇଦିନ ପରେ ରଥଯାତ୍ରା ହେବ । ପ୍ରାୟ ଦୁଇମାସ (୫୮ଦିନ) ପରେ ଜଗନ୍ନାଥ ମନ୍ଦିରର ଦୈନନ୍ଦିନ ନୀତି ପୁଣି ପୂର୍ବପରି ସାମାନ୍ୟ ହୋଇଯିବ ।

ଅନେକ ଲୋକ ଏହାକୁ ଅନ୍ଧବିଶ୍ୱାସ ବୋଲି ମଧ୍ୟ କହିପାରନ୍ତି, କିନ୍ତୁ ଶହଶହ ବର୍ଷରୁ ଚାଲି ଆସିଥିବା ଏହି ପ୍ରଥାକୁ ନେଇ ସମଗ୍ର ହିନ୍ଦୁ ସମାଜ, ତଥା ପୁରୀର ବାସିନ୍ଦାମାନେ ଭାବରେ ବିଭୋର । ସେଇଥିପାଇଁ ରାଜ୍ୟ ସରକାର କୌଣସି ଭୁଲ କରିବାକୁ ଚାହୁଁନାହାନ୍ତି । ଏତେ ସଂଖ୍ୟାରେ ଆସୁଥିବା ଶ୍ରଦ୍ଧାଳୁ ଓ ଭକ୍ତଙ୍କ ପାଇଁ ଆନୁସଙ୍ଗିକ ବ୍ୟବସ୍ଥା କରିବାପାଇଁ ସବୁପ୍ରକାର ଚେଷ୍ଟା କରାଯାଉଛି । ସେମାନଙ୍କର ରହଣୀ, ଖାଦ୍ୟପେୟ, ସ୍ୱାସ୍ଥ୍ୟ ଇତ୍ୟାଦି ବିଷୟପ୍ରତି ବିଶେଷ ଧ୍ୟାନ ଦିଆଯାଉଛି ।

ଏଥିପାଇଁ ଅନ୍ୟୁନ ୨ ହଜାର କୋଟି ଟଙ୍କାର ବ୍ୟୟବରାଦ କରାଯାଉଛି ।

ଏହି ଖର୍ଚ୍ଚର ଏକ ବଡ଼ ଭାଗ ପୁରୀ ସହରର ବିଦ୍ୟୁତ ବ୍ୟବସ୍ଥାକୁ ସୁଗ୍ଦରୁରୂପେ କରିବାପାଇଁ ଖର୍ଚ୍ଚ କରାଯାଉଛି, ସହର ନିକଟରେ ଥିବା ପୁରୀ-କୋଣାର୍କ ମେରାଇନ୍ ଡ୍ରାଇଭ ନିକଟରେ ଏକ ଉଚ୍ଚ କ୍ଷମତା ସମ୍ପର୍ନ୍ନ ଗ୍ରୀଡ଼ର ନିର୍ମାଣ କରାଯାଇଛି । ଭୂମିତଳେ ବିଦ୍ୟୁତତାର ବିଛାଇବା କାର୍ଯ୍ୟ କରାଯାଉଛି, ଯାହାଫଳରେ କୌଣସି ଦୈବୀଦୁର୍ବିପାକ ଯଥା ବାତ୍ୟା ହେଲେ ବିଦ୍ୟୁତ ସରବରାହ ବିଚ୍ଛିନ୍ନ ହେବନାହିଁ ।

ଭୁବନେଶ୍ୱର-ପୁରୀ ରାଜ୍ୟ ରାଜମାର୍ଗର ପ୍ରଶସ୍ତିକରଣ କରାଯାଉଛି । ମାଳତିପାଟପୁର ନିକଟରେ ଏକ ବସ ଟର୍ମିନାଲ୍ ନିର୍ମାଣ କରାଯାଉଛି । ଏହା ବ୍ୟତୀତ ପୁରୀରେ ପ୍ରବେଶ ପୂର୍ବରୁ ୨୦ଟି ସ୍ଥାନରେ ଯାନବାହାନ ରହଣୀ ନିମନ୍ତେ ଷ୍ଟାଣ୍ଡର ବ୍ୟବସ୍ଥା କରାଯାଉଛି । ଏହି ସବୁ ସ୍ଥାନରେ ଜଳ ବିଣ୍ଟନ ବ୍ୟବସ୍ଥାପାଇଁ ସାତଟି ବଡ଼ ପାଣିଟାଙ୍କି ନିର୍ମାଣ କରାଯାଇଛି ।

ଅଧିକ ଯାତ୍ରୀ ଆସିବାର ଆଶଂକା କରି ପୁରୀ ରେଳୱେ ଷ୍ଟେସନକୁ ଦ୍ୱିଗୁଣ କ୍ଷମତାସମ୍ପର୍ନ୍ନ କରାଯାଉଛି । ଏହା ସହିତ ଭୁବନେଶ୍ୱର ଷ୍ଟେସନରେ ବି ଉନ୍ନୟନ କରାଯାଉଛି, ଏଥିପାଇଁ ୮୦ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଛି, ଯେଉଁଥିରୁ ୪୦ କୋଟି ରାଜ୍ୟ ସରକାର ବହନ କରିବେ ବୋଲି ପ୍ରତିଶୃତି ଦେଇଛନ୍ତି । ଖୋର୍ଦ୍ଧା-ଭୁବନେଶ୍ୱର-ବାରଙ୍ଗ ରାସ୍ତାରେ ନୂଆ ରେଳପଥ ନିର୍ମାଣ ଚାଲିଛି ।

ଆସୁଥିବା ଯାତ୍ରୀଙ୍କ ସ୍ୱାସ୍ଥ୍ୟପାଇଁ ପୁରୀ ନିକଟରେ ଥିବା ଅନେକ ସ୍ୱାସ୍ଥ୍ୟ ବ୍ୟବସ୍ଥାରେ ଶଯ୍ୟାସଂଖ୍ୟା ପାଞ୍ଚଶହ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଛି । ୧୦୦ଟି ପ୍ରାଥମିକ ଉପଚାର କେନ୍ଦ୍ର, ୧୨୦ଟି ଆମ୍ବୁଲାନ୍ସର ବ୍ୟବସ୍ଥା ବି କରାଯାଉଛି । ଏହା ବ୍ୟତୀତ ଅନ୍ୟୁନ ୯୦୦ ସ୍ୱାସ୍ଥ୍ୟକର୍ମୀଙ୍କୁ ନିଯୁକ୍ତି ଦିଆଯାଉଛି ।

ଏହି ସମୟରେ ପୁରୀରେ ଆନ୍ତର୍ଘାତୀ କାର୍ଯ୍ୟକଳାପକୁ ଆଡ଼େଇବାପାଇଁ ପଞ୍ଚସ୍ତରୀୟ ସୁରକ୍ଷା ବ୍ୟବସ୍ଥାକୁ କଡ଼ାକଡ଼ି ଭାବରେ ଲାଗୁକରାଯାଉଛି । ସମଗ୍ର ସହର ଓ ବିଶେଷତଃ ବଡ଼ଦାଣ୍ଡରେ କ୍ଲୋଜ୍‌ସର୍କିଟ୍ କ୍ୟାମେରା ଲଗାଯାଇ ସୁରକ୍ଷାର ବଳୟକୁ ସୁଦୃଢ଼ କରାଯାଉଛି । ଲୋକମାନଙ୍କୁ ଅସୁବିଧାରୁ ବଞ୍ଚାଇବା ପାଇଁ ସହରର ବିଭିନ୍ନ ପ୍ରମୁଖ ସ୍ଥାନରେ ୩୦ଟି ବଡ଼ ଟିଭି ଲଗାଇ ଲୋକଙ୍କୁ ଟ୍ରାଫିକ୍

ବିଷୟରେ ସୂଚନା ଦେବାବ୍ୟବସ୍ଥା ହେଉଛି ।

ସମୁଦ୍ର କୂଳରେ ଥିବା ଏହି ସହରକୁ ସମୁଦ୍ରପଥରେ ଆତଙ୍କବାଦୀମାନେ ଆସିପାରନ୍ତି, ତେଣୁ ବେଳାଭୂମି ସୁରକ୍ଷାବଳକୁ ସଶସ୍ତ୍ର ବାହିନୀ ଯୋଗାଇ ଦିଆଯାଉଛି । ଅସ୍ତରଙ୍ଗ, ରାମଚଣ୍ଡୀ, ଚକ୍ରତୀର୍ଥ ଏବଂ ଆରାଖୁଡ଼ା ପୋଲିସ ଫାଣ୍ଡିକୁ ଅଧିକ ଆଧୁନିକ ହାତହତିଆର ଯୋଗାଇ ଦିଆଯାଉଛି । ପୁରୀ ବେଳାଭୂମି ନିକଟବର୍ତ୍ତୀ ସମୁଦ୍ରରେ ଦୁଇଟି ଅତ୍ୟାଧୁନିକ ବୋଟ୍ ସୁରକ୍ଷାପାଇଁ ରହିବ । ପୁରୀ ଉପର ଦେଇ କୌଣସି ବିମାନ ଚଳାଚଳ କରିବନାହିଁ । ପୁରୀକୁ ଆସୁଥିବା ଯାତ୍ରୀଙ୍କ ବ୍ୟାଗ କୁ ତନ୍ନତନ୍ନ କରିପରୀକ୍ଷା କରିବାପାଇଁ ବ୍ୟାଗାଜ୍ ସ୍କାନର୍ ଲାଗିବ ।

ବିଗତ ନବକଳେବର ସମୟରେ ପ୍ରାୟ ୨୦ ଲକ୍ଷ ଭକ୍ତ ପୁରୀ ଆସିଥିଲେ, ଏବଂ ଚଳିତବର୍ଷ ତାହା ୫୦ ଲକ୍ଷ ହୋଇପାରେ ବୋଲି କୁହାଯାଉଛି । ପୁରୀ ସହରରେ ଥିବା ୪୮୦ ହୋଟେଲ୍, ୨୦୦ ଲଜଂ, ୧୨ଟି ଧର୍ମଶାଳା, ୮୦ଟି ଆଶ୍ରମ, ଏବଂ ଶତାଧିକ ହଲିଡ଼େ ହୋମ୍ ସବୁ ଶ୍ରଦ୍ଧାଳୁମାନଙ୍କୁ ଉଚିତ ସେବା ଯୋଗାଇଦେବେ ବୋଲି ଆଶା କରାଯାଉଛି । ବିଗତ ନବକଳେବର କୌଣସି ବାଧାବିଘ୍ନ ନ ହୋଇ ସୁରୁଖୁରୁରେ ସମ୍ପର୍ନ୍ନ ହୋଇଯାଇଥିବା ବେଳେ ଏହିଥର ମଧ୍ୟ କୌଣସି ଅସୁବିଧା ହେବନାହିଁ ବୋଲି ପ୍ରଶାସନ ତରଫରୁ ସମସ୍ତ ବ୍ୟବସ୍ଥା କରାଯାଇଛି ।

ସମସ୍ତେ ପ୍ରତୀକ୍ଷା କରିଛନ୍ତି ନବକଳେବର ଏବଂ ଏହା ସହିତ ପୁରୀରେ ହେବାକୁ ଥିବା ଆଶାତୀତ ଜନସମାଗମକୁ ।

ବୀମାନଗର, ୨ୟ ଗଳି, ବ୍ରହ୍ମପୁର
ଫୋନ୍ : ୯୦୪୦୯୮୫୪୬୩
ଇ-ମେଲ୍ : aahwaan@gmail.com

# ଲାଜ

ହୃତେଶ ମହାପାତ୍ର



ଲାଗୁଛି ଭୋକ
ବଢୁଛି ଶୋଷ
ନାହିଁ ଉପାୟ
ହେବାକୁ ହେବ ଲଂଗଳା ..

କାମ ମାଗିଲେ
ହାତ ଧର୍
ଗ୍ଭତ ମାଗିଲେ
ଖଟ ଶାର୍

ଘର ବନ୍ଧକ
ପିଲା ବନ୍ଧକ
ପେଟ ପାଇଁ
ଦେହ ବନ୍ଧକ

ଲାଜ ସରିଗଲା
ମନ ହଜିଗଲା
ମନ ମରିଗଲା
ରହିଛି ଖାଲି
ଗ୍ଭଲୁଥିବା ଶବ...

# ଦୁଇଧାର ଲୁହ

ବନୟ ମୋହନ ଦାସ



ଅଜାଣତେ ବୋହ ଆସେ
ଦୁଇ ଧାର ଲୁହ
ତୁମ ସ୍ମୃତ ଭରଦଏ
ମନେ କେତେ କୋହ
ଫେରବନ ଜାଣି ମଧ
ଗୃହିଁ ମୁଁ ବସିଛ
ପ୍ରତଦନ ତୁମ ଯିବା
ପଥକୁ ଦେଖୁଛ ।

ନର୍ନିମେଷ ଦୃଷ୍ଟି ଲମ୍ବେ
ଦୂର ଆକାଶକୁ
ତାରଗଣେ ଜ୍ୟୋତସ୍ଫୀତ
ଦୀପ୍ତି ବାଣ୍ଟିବାକୁ
ସ୍ନେହେ ବାନ୍ଧିଲ ସଭିଁଙ୍କୁ
ଯେତେ ଦନ ଥିଲ
ଫେରବାକୁ ଅନୁରୋଧ
କେବେ ନ ରଖିଲ ।

ଅଣବାହୁଡ଼ା ନଳୟ
କାହିଁ ନେଲ ବାଛ
ଦଣ୍ଡ ଦେଇ ପାରଥାନ୍ତ
ଦୋଷୀଟିକୁ ବାଛ
ଖୁସି ହୋଇ ପାରଥାନ୍ତା
ନଜେ ସେହ ଦୋଷୀ
ଏ' କପର ଦଣ୍ଡ ଦେଲ
କଅଣ ମନାସୀ ।

ଗଛ ପତର କାନ୍ଦୁଛ
ତୁମ ବହୁନରେ
ଅମାନଆ ଦୁଇ ଧାର
ପ୍ରତଦନ ଝରେ
ଏମିତ ଲଗଇ ମୋତେ
ପାଖେ ପାଖେ ଅଛ
ସତ୍ୟବୋଲ ମଣିଲେ ବ
ଅନ୍ୟପାଇଁ ମିଛ ।

# ମୁଁ ଅର୍କକ୍ଷେତ୍ର !

ମମତା ଦାଶ,



ମୁଁ ଅର୍କକ୍ଷେତ୍ର କୋଣାର୍କ, କେଉଁ ଆବାହମାନ କାଳରୁ ଏଠି ଥୁଣ୍ଟା ବରଗଛ ପରି ଆକାଶକୁ ଗୁହିଁ ରହିଛି । ମୁଁ ଏବଂ ମୋର ନାମ ସୂର୍ଯ୍ୟ ଦେବତାଙ୍କୁ ସମର୍ପିତ । ସୂର୍ଯ୍ୟ ଦେବତାଙ୍କ ରଥ ସଦୃଶ ମୋତେ ଏକ ବିରାଟ ଭବ୍ୟ ଭବନରେ ପରିଣତ କରାଯାଇଛି । ମଧ୍ୟକାଳୀନ ଓଡିଶା ବାସ୍ତୁ କଳାର ଅନୋଖା ନମୁନା ମୁଁ ଏବଂ ଭାରତ ବର୍ଷର ପ୍ରସିଦ୍ଧ ତୀର୍ଥସ୍ଥଳୀ ମଧ୍ୟରୁ ଅନ୍ୟତମ । କେତେବେଳେ ମୁଁ ସୂର୍ଯ୍ୟ ଉପାସନାର ପ୍ରଧାନ ପୀଠ ଥିଲି । ମୋ ଠାରୁ କିଛି ଦୂରରେ ଅବସ୍ଥିତ ଚନ୍ଦ୍ରଭାଗା ନଦୀ କୂଳରେ ପ୍ରଭୁ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ବାରବର୍ଷ ତପସ୍ୟା କରି ସୂର୍ଯ୍ୟ ଦେବତାଙ୍କ ପ୍ରସନ୍ନ କ୍ରମେ କୁଷ୍ଠ ରୋଗରୁ ମୁକ୍ତି ପାଇଥିଲେ । ସୂର୍ଯ୍ୟଦେବ, ଯିଏ କି ସମସ୍ତ ରୋଗର ବିନାଶକ ରୂପେ ପରିଚିତ, ତାଙ୍କର ସମ୍ମାନ କ୍ରମେ ଶାମ୍ବ ଏକ ସୂର୍ଯ୍ୟ ମନ୍ଦିର ନିର୍ମାଣ କରିବାରେ ନିର୍ଣ୍ଣୟ ନେଇଥିଲେ । ରୋଗନାଶ ପରେ ଚନ୍ଦ୍ରଭାଗା ନଦୀରେ ସ୍ନାନ କରିବା ସମୟରେ ତାଙ୍କୁ ଏକ ସୂର୍ଯ୍ୟ ଦେବତାଙ୍କ ମୁର୍ତ୍ତି ମିଳିଥିଲା । କିମ୍ବଦନ୍ତୀରେ ଅଛି, ସୂର୍ଯ୍ୟଦେବଙ୍କ କିଛି ଅଂଶକୁ ନେଇ ଦେବ ଶିଳ୍ପୀ ବିଶ୍ୱକର୍ମା ଏହାର ନିର୍ମାଣ କରିଥିଲେ । ଶାମ୍ବ ଏହି ମୁର୍ତ୍ତିକୁ ନେଇ "ମିତ୍ରବନ"ରେ ଏକ ମନ୍ଦିର ନିର୍ମାଣ କରି ଏହାର ପୂଜା-ଅର୍ଚ୍ଚନା କରିଥିଲେ । ତେବେଠାରୁ ଏହି ସ୍ଥାନକୁ ପବିତ୍ର ମାନି "ଚନ୍ଦ୍ରଭାଗା ବୁଡ"ରେ ପରିଣତ କରାଯାଇଛି ।

ହିଁ....ମୁଁ ଦେଖୁଛି..... ଏଇଠି ଠିଆ ହୋଇ ମୁଣ୍ଡଟେକି ଦେଖୁଛି । ସବୁ ଦେଖୁଛି.... । ପ୍ରତି ବର୍ଷ ଅନେକ ଶ୍ରଦ୍ଧାଳୁ ଏଇଠାକୁ ଆସି ଚନ୍ଦ୍ରଭାଗା ବୁଡ ପକାନ୍ତି । କିନ୍ତୁ ମୁଁ...... ଓଡିଶାର ଐତିହ ଏଠି କ'ଣ ପାଇଁ ଠିଆହୋଇଛି ? ମୋର ନିର୍ମାଣ ପାଇଁ ଓଡିଶାର ଗଙ୍ଗ ବଂଶର ରାଜା ନରସିଂହ ଦେବ (ପ୍ରଥମ) ନିସ୍ପତି ନେଇଥିଲେ । ବାରଶହ ବଢେଇ ଏବଂ ବାସ୍ତୁକାରଙ୍କୁ ମୋ ନିର୍ମାଣ କାର୍ଯ୍ୟରେ ଲଗା ଯାଇଥିଲା । ଓ......ହୋ......କି କଷ୍ଟ...... । ବାରଶହ ବଢେଇ ମୋ ଶରୀରକୁ ବାରବର୍ଷ



ଧର ପ୍ରତଦନ ହାଣି, ଛେଦ ମୋ ଦେହରେ ଟିକ-ନଖି କାରଗର କର ଏକ ସ୍ୱତନ୍ତ୍ର ରୂପ ଦେଇ ଐତହ ବନେଇବାରେ ଲାଗି ପଡିଥିଲେ । ମୁଁ ସବୁ କଷ୍ଟ ଚୁପ୍......ଗୁପ୍...... ସହ ଯାଇଥିଲ । ଭାବଥିଲ ରାଜାଙ୍କୁ ଖୁସି କରବ । ଓଡିଶାର ଐତହ ଏବଂ ଗୌରବ ହେବ ।

ଆରେ....... ଏ....... କ'ଣ ! ରାଜାଙ୍କ ଆଦେଶ-ସମୟ ନର୍ଧାରଣ । ଉପଯୁକ୍ତ ସମୟରେ କାର୍ଯ୍ୟ ସମାପ୍ତ କରବାକୁ ହେବ । ନଚେତ୍ ବାରଶହ ବଢେଇଙ୍କର ମୁଣ୍ଡକାଟ ଆଦେଶ । ମୁଖ୍ୟ କାରୀଗର ବସୁ ମହାରଣାର ଚନ୍ତା ଦେଖି ମୁଁ ହତାଶ ହୋଇପଡିଥିଲ । ବସୁ ବାର ବର୍ଷ ପୂର୍ବରୁ ତା ଘର ଛାଡି ମୋ କାର୍ଯ୍ୟରେ ଲପ୍ତ ଥିଲା । ତାର ପୁତ୍ର "ଧର୍ମପଦ"ର ମୁଖମଣ୍ଡଳ ଦର୍ଶନରୁ ବଞ୍ଚିତ ଥିଲା । ଏପଟେ ଧର୍ମପଦ ମଧ ତାର ପିତାଙ୍କୁ ଖୋଜ-ଖୋଜ ଠିକ୍ ଏହ ହତାଶାର ସମୟରେ ଉପସ୍ଥିତ ହୋଇଯାଇଥିଲା ତା ପିତା ବସୁ ମହାରଣା ସମ୍ମୁଖରେ ।

ବାର ବର୍ଷର ଛୁଆ ସେ । କ......ସୁନ୍ଦର ମୁଖ ! ଜଳ-ଜଳ ଉଜ୍ଜ୍ୱଳ ଆଖିରେ ଅନେକ ସ୍ୱପ୍ନ । ହଁ.....ମୁଁ ଦେଖିଥିଲ-ତା ଆଖିରେ କଛ ଚମତ୍କାର କରବାର ଶକ୍ତି ମୁଁ ଦେଖିଥିଲ...... ।

ପିତାକୁ ବାଡି ବରକୋଳ ଖୁଆଇ ଦେଇ ଶୁନଶାନ୍ ନର୍ଜନ ରାତ୍ରର ନର୍ଜନତାରେ ମୋର ମୁଣ୍ଡି ମାର ସମୁଦ୍ର କୋଳକୁ ଡେଇଁ ପଡିଥିଲା ସେ...... ।



ଓ.......ହୋ....... ସାଗରର କ ଭୟଙ୍କର ଗର୍ଜନ ସେ ଦନ । ମୋ କାନକୁ ସ୍ତବ୍ଧ କରଦେଉଥାଏ । ଦେଖୁ ଦେଖୁ ଧର୍ମପଦକୁ ତାର କୋଳକୁ ଟାଣିନେଲା ସେ । ମୁଁ ଚୁହିଁ ମଧ ତାର ରକ୍ଷା କର ପାରଲ ନାହିଁ । "ଅବଶୋଷ........" । ମୋ ହାତରେ କଛ ନଥିଲା । ମୁଁ ତ ପାଷାଣ......ମୁଁ ତ ପଥର । ସେଇଥିପାଇଁ ତ ମୋତେ ଏମାନେ ଏତେ କଷ୍ଟ ଦେଉଛନ୍ତ । ପିଲାଟା ବ ବାରଶହ ବଢେଇଙ୍କ ରକ୍ଷା ଉଦ୍ଦେଶ୍ୟରେ ତାର ଜୀବନକୁ ହୋମ କରଦେଲା । ଆଃ...... ! ଏତେ କମ ବୟସରେ ଏତେ ବୁଦ୍ଧିମାନ ! ସବୁ ଦେଖିଛ.......ମୁଁ ସବୁ ଦେଖିଛ....... ଚୁପ୍-ଗୁପ୍ ସବୁ ଦେଖିଛ ।

ମୋର ସମ୍ପୂର୍ଣ୍ଣ ରୂପ ଦେଖି ରାଜା ବହୁତ ଖୁସି ହୋଇଥିଲେ । କୁଶଳ କାରୀଗରଙ୍କ ଉତକୃଷ୍ଟ କାରୀଗର,

ସ୍ଥାପତ୍ୟ କଳା ଏବଂ ବୈଭବ ପୂର୍ଣ୍ଣ କାର୍ଯ୍ୟ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଉଥିଲି । ମୋର ଅଦ୍ୱିତୀୟ ସୁନ୍ଦରତା, ଅନେକ ଶିଳ୍ପ ଆକୃତି, ଦେବତାଙ୍କ ଦରବାରର ଛବି, ମାନବ ବାଦ୍ୟକାରଙ୍କ ଛବି, ଶିକାର କରିବାର ଦୃଶ୍ୟ, ଯୁଦ୍ଧ ଯାତ୍ରାର ଦୃଶ୍ୟ, ନର୍ତକୀ ମାନଙ୍କର ନୃତ୍ୟ ଶୈଳିର ଦୃଶ୍ୟ ଏହିପରି ଅନେକ ଆକର୍ଷକ ଏବଂ ଯଥାର୍ଥବାଦର ସଂଗମ ମୋ ଶରୀରରେ ଏବେ ବି ମୁଁ ଧରି ରଖିଛି । ଓଡିଶା ଶିଳ୍ପକଳାର ଅଦ୍ୱିତୀୟ ଆକର୍ଷଣର କେନ୍ଦ୍ର ରୂପରେ ପରିଚିତ ମୁଁ । ମନୁଷ୍ୟ, ପଶୁ, ପକ୍ଷୀ, ଦେବତା, ଗନ୍ଧର୍ବ ସମସ୍ତଙ୍କ ଜୀବନ ଉପରେ ଆଧାରିତ ଛବିକୁ ମୁଁ ମୋ ଦେହରେ ଆଜିବି ସାଇତି ରଖିଛି । ମୁଁ ଖାଲି ମୋ ବାସ୍ତୁକଳା, ଭବ୍ୟତା, ଶିଳ୍ପକଳାର ଗୁନ୍ଥନ ପାଇଁ ପ୍ରସିଦ୍ଧ ନଥିଲି, ମୁଁ କଳିଙ୍ଗ ବାସ୍ତୁକଳାର ଉପଲବ୍ଧିର ଅନ୍ୟତମ କେନ୍ଦ୍ରବିନ୍ଦୁ ଥିଲି ଯାହାର ଭବ୍ୟତା, ଉଲ୍ଲାସ ଏବଂ ଜୀବନର ସମସ୍ତ ପକ୍ଷର ଅନୋଖା ତାଳ-ମେଳର ଗୁନ୍ଥନକୁ ଏବେ ମଧ୍ୟ ମୁଁ ପ୍ରଦର୍ଶିତ କରୁଛି ।

ମୋ ଦେହରେ ସୂର୍ଯ୍ୟଦେବଙ୍କର ଭବ୍ୟ ଯାତ୍ରାକୁ ପ୍ରଦର୍ଶିତ କରି ଯାଇଛି । ସୂର୍ଯ୍ୟଦେବଙ୍କ ତିନି ରୂପ, ବାଲ୍ୟାବସ୍ଥା (ଉଦିତ ସୂର୍ଯ୍ୟ), ଯୁବାବସ୍ଥା (ମଧ୍ୟାନ ସୂର୍ଯ୍ୟ) ଏବଂ ପୌଢ଼ାବସ୍ଥା (ଅସ୍ତ ସୂର୍ଯ୍ୟ) ମୋ ଦେହରେ ଅଙ୍କିତ ଅଛି ।

ଆରେ ! ଏ କାଳକୁ ଦେଖ । ଏ କ'ଣ ହେଲା....... । କାଳ ମୋତେ ଗ୍ରାସ କରିଦେଲା । ମୁଁ ମୋର ବାସ୍ତବିକ ରୂପକୁ ଧିରେ ଧିରେ ହରେଇ ଦେଉଛି । ମୋର ଜୀବନଦାୟିନୀ କିରଣ ସମସ୍ତ ବିଶ୍ୱକୁ ଉର୍ଜା, ତାପ ଏବଂ ତେଜ ଦେଉଥିବା ଭୁବନ-ଭାସ୍କର ସୂର୍ଯ୍ୟଙ୍କର ପ୍ରାଚୀନ ଅତ୍ୟନ୍ତ ଭବ୍ୟ ମନ୍ଦିରର ଭବ୍ୟତା, ବୈଭବ ଏବଂ ସମୃଦ୍ଧିକୁ ମୁଁ କ'ଣ ପାଇଁ ଅଧିକ ସମୟ ପର୍ଯ୍ୟନ୍ତ ଧରି ରଖି ପାରିଲି ନାହିଁ । ମୋର କ'ଣ ଭୁଲ ଥିଲା ? ମୁଁ ତ ବହୁତ କଷ୍ଟ ସହିଥିଲି । ସମସ୍ତେ ମୋ ଉପରେ ନିଜ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ମୋର ବା ଦୋଷ କ'ଣ....... ?

ଆରେ ....... ଏ କ'ଣ ! ଏ କଳାପାହାଡ କେଉଁଠୁ ଆସିଲା ? ମୁଁ ତାର କ'ଣ କ୍ଷତି କରିଥିଲି ? ଆରେ.......ଏ.......ତ.......ହିନ୍ଦୁ ଧର୍ମର ବିନାଶକ ରୂପରେ ପରିଚିତ । ମୁଁ ତ ହିନ୍ଦୁ ଧର୍ମର ଗର୍ବ । ସେ ମୋତେ ବି ଛାଡିଲା ନାହିଁ । ମୋର ବିଶାଳ ଶରୀର ଏବଂ ମୋଟା ପରିତ ଯୋଗୁ ମୋର ବିଶେଷ କିଛି କ୍ଷତି କରିପାରି ନଥିଲା । କିନ୍ତୁ ରାଗରେ ଆସି ମୋର ଦଧିନଉତିକୁ ହଲେଇଦେଇ ପଳାଇଗଲା । ମୋ ପତନର ଏ ହେଉଛି ଏକ ମୁଖ୍ୟ କାରଣ । ସେଥିପାଇଁ ମୋ ମୁଖଶାଳାରୁ ମୁଁ ଧିରେ ଧିରେ କ୍ଷତିଗ୍ରସ୍ତ ହେବାରେ ଲାଗିଲି । ମୁଁ ସବୁ ଦେଖିଛି । କଷ୍ଟରେ ଥାଇ ବି ମୁଁ ଦେଖୁଥାଏ....... । ମା ରାମଚଣ୍ଡି କଳପାହାଡକୁ ଲୁଚି ପଳାଇଗଲେ । ମା ତ ଜଗତ ଜନନୀ । ମା ଦେହରେ ହାତ ଲଗାଇ ପାରିଲା ନାହିଁ । ପୁରୀ ପଣ୍ଡାମାନେ ମଧ୍ୟ ଜଗନ୍ନାଥ ମନ୍ଦିରର ପବିତ୍ରତା ବଞ୍ଚାଇ ରଖିବା ଉଦ୍ଦେଶ୍ୟରେ ଜଗନ୍ନାଥଙ୍କୁ ଏକ ଗୁପ୍ତ ଯାଗାକୁ ନେଇଗଲେ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ପୂଜାରୀମାନେ ମଧ୍ୟ ଭୋଳାନାଥଙ୍କ ରକ୍ଷା ଉଦ୍ଦେଶ୍ୟରେ ଗର୍ଭଗୃହରେ ନଡା, କୁଟା ଜମା କରି ଦେଇଥିଲେ । କଳାପାହାଡ ପୁରା ଚେଷ୍ଟା କରିଥିଲା ଭୋଳାନାଥଙ୍କୁ କ୍ଷତି ପହଞ୍ଚାଇବା ପାଇଁ । ଶେଷରେ ନିରାଶ ହୋଇ ନିଆଁ ଲଗାଇ ଦେଇଥିଲା କଳାପାହାଡ । ଭୟଙ୍କର ଅଗ୍ନିଜ୍ୱାଳାରେ ମହାଦେବଙ୍କର ଲିଙ୍ଗ ମଧ୍ୟ

ସାମାନ୍ୟ କ୍ଷତଗ୍ରସ୍ତ ହୋଇଥିଲି । ଏ ସବୁ ମୁଁ ମୋ ନିଜ ଆଖିରେ ଦେଖିଅଛି ଏବଂ ସମସ୍ତ କଷ୍ଟକୁ ଅନୁଭବ କରିଅଛି ମଧ୍ୟ....... । ତଥାପି ମୁଁ ମୁଣ୍ଡଟେକି ରହିଥିଲି ।

"ଧର୍ମପଦ" – ବାର ବର୍ଷର ଛୁଆ ସେ । ମୋର ମୁଣ୍ଡି ମାରିବା ପାଇଁ ତାର ଜୀବନ ଦେଇ ଦେଇଥିଲା ସେ....... । କାଳକ୍ରମେ କ'ଣ ହେଲା ? ସେହି ପଥରକୁ କାଢିନେଲେ । କହିଲେ ଏହି ପଥରରେ ଚୁମ୍ବକୀୟ ଶକ୍ତି ଅଛି । ସମସ୍ତ ସାଗର ପୋତ ମୋ ଯୋଗୁ ଧ୍ୱଂସ ହୋଇ ଯାଉଅଛି । ନାବିକ ମାନେ ଏହା କହି ମୋର କେନ୍ଦ୍ରୀୟ ଶିଳାକୁ କାଢିନେଲେ ଯଦ୍ଵାରା ମୋର ଶରୀରର ସମସ୍ତ ସନ୍ତୁଳନ ଧିରେ ଧିରେ କ୍ଷୀଣ ହେବାକୁ ଲାଗିଲା । ମୁଁ ଧ୍ୱଂସାବଶେଷ ଆଡକୁ ଗତି କରିବାକୁ ଲାଗିଲି । ତଥାପି ମୁଁ ବଞ୍ଚିଥିଲି....... । ଭାବିଲି ମୋ ମୁଣ୍ଡ ଖଣ୍ଡିଆ ହେଲେବି ମୁଁ ଏଇ ଖଣ୍ଡିଆ ମୁଣ୍ଡକୁ ଟେକି ଯେତେ କଷ୍ଟ ହେଉ ପଛେ ମୁଁ ରହିବି....... ନିଶ୍ଚୟ ରହିବି....... ।

ଆରେ....... ! ଏ ପୁଣି କ'ଣ ! ଜଣେ ମରଠୀ ଯୋଦ୍ଧା ଆସି ମୋ ଅରୁଣ ସ୍ତମ୍ଭକୁ ଉଠାଇ ନେଇ ପୁରୀ ଜଗନ୍ନାଥ ମନ୍ଦିର ମୁଖଦ୍ୱାରରେ ସ୍ଥାପନା କରିଦେଲେ । ତଥାପି ମୁଁ କିଛି କହିନଥିଲି । ସମସ୍ତେ ନିଜ ନିଜର ମନମାନି କରିଥିଲେ । ଯିଏ ଯାହା ଚାହିଁଲା ମୋ ସାଙ୍ଗରେ ଅନ୍ୟାୟ କଲା । ମୁଁ ମୁଣ୍ଡପୋତି ସବୁ ସହି ଯାଉଥିଲି । କାରଣ ମୁଁ ଓଡିଶାର ଗର୍ବ ଓ ଗୌରବକୁ ବଞ୍ଚାଇ ରଖିବା ପାଇଁ ଚାହୁଁଥିଲି....... ।

ବର୍ତ୍ତମାନ ମୁଁ ମୋ ମୂଳ ସ୍ୱରୂପକୁ ହରାଇ ଦେଇଛି । କେତେବେଳେ ମୁଁ ସୂର୍ଯ୍ୟ ଦେବତାଙ୍କ ରଥକୁ ଟାଣୁଥିଲି । କିଛି ବିଦ୍ୱାନଙ୍କ ମତରେ ମୋର ଧ୍ୱଂସର କାରଣ ହେଉଛି ମୋର ବିଶାଳ ରୂପ ଏବଂ ବାସ୍ତୁ ଦୋଷର କାରଣ । ଆଉ କିଛି ବିଦ୍ୱାନ କହନ୍ତି, ମୁଁ କେତେବେଳେ ମୋ ପୂର୍ଣ୍ଣରୂପରେ ନଥିଲି । କିନ୍ତୁ "ଆଇନେ – ଇ – ଆକବରୀ" ରେ ଅବୁଲ୍ ଫଜଲ ମୋର କୀର୍ତ୍ତିକୁ ବର୍ଣ୍ଣନା କରି ଯାଇଛନ୍ତି । କିଏ କିଛି ବି କହୁ, ମୁଁ ହେଉଛି ମୁଁ.......

ମୁଁ ହେଉଛି ସୂର୍ଯ୍ୟ ଦେବତାଙ୍କର ରଥ, ଶକ୍ତିର ସ୍ତମ୍ଭ, ଆଶାର ପ୍ରତୀକ । ମୋର ଦେହରେ ଯୋଡା ହୋଇଥିବା ବାର ଯୋଡି ଚକ ହେଉଛି ବାର ମାସର ପ୍ରତୀକ । ମୋର ଏହି ଚକ ସମୟ ଚକ୍ରର ଗତିର ଦିଶାକୁ ନିର୍ଧାରିତ କରେ ।

ମୋର ଏହି ବାର ଯୋଡି ଚକକୁ ଟାଣିବା ପାଇଁ ସାତ ଯୋଡି ଘୋଡାକୁ ଯୋଗୁ କରାଇଛି । ଏହି ସାତଟି ଘୋଡା ମୋର ସପ୍ତାହର ସାତ ଦିନର ପ୍ରତୀକ । ମୁଁ ସମୟର ଗତିକୁ ଦର୍ଶାଏ ଏବଂ ମୋତେ ସୂର୍ଯ୍ୟଦେବ ନିୟନ୍ତ୍ରିତ କରନ୍ତି । କ'ଣ ହେଲା ମୁଁ ଆଜି ଧ୍ୱଂସ ଆଡକୁ ଗତି କରୁଛି ? ମୋର ଚକ ସବୁ ଭାଙ୍ଗି-ରୁଜି ଗଲାଣି । ମୋର ଘୋଡା ମାନେ ଦୁର୍ବଳ ଏବଂ ନିସ୍ତେଜ ହୋଇ ଗଲେଣି । ମୁଁ ହେଉଛି ସୂର୍ଯ୍ୟଦେବଙ୍କ ରଥ, ଶକ୍ତିର ପ୍ରତୀକ । ମୋର ଏଇ ଚକ ଏବଂ ଘୋଡା ମୋର ଅସ୍ତିତ୍ୱ, ଦେଶର ଗର୍ବ । ମୁଁ ସେମାନଙ୍କୁ ପୁର୍ନଃଜୀବିତ କରିବି । ସେମାନଙ୍କ ମଧ୍ୟରେ ଶକ୍ତିର ସଞ୍ଚାର କରିବି । ସେମାନେ ମୋତେ ଟାଣି-ଟାଣି ନେଇ ମୋ ଲକ୍ଷସ୍ଥଳରେ ପହଞ୍ଚାଇବେ । ଏମାନେ ହେଉଛନ୍ତି ମୋ ଆଶାର ପ୍ରତୀକ, ମୋ ଭବିଷ୍ୟତର ମାର୍ଗ ଏବଂ ବର୍ତ୍ତମାନର ନବୀନ ଆକଳନ ପାଇଁ ମୋ ଆଖିରେ ନୂତନ ସ୍ୱପ୍ନ ସଜେଇ, ମୋତେ ନୂତନ ପଥ



ଦେଖେଇ, ଟାଣି-ଟାଣି ନେଉଛନ୍ତି । କାରଣ ମୁଁ ଆଗାମୀ କାଲର ସୁଗମ-ମାର୍ଗର ଦଶାକୁ ଦର୍ଶେଇ ନୂତନ ଇତହାସ ରଚନା କରପାରବ । ଇତହାସର ନୂତନ ପୃଷ୍ଠାରେ ମୋର ଏହ ଦଗବଜୟ ଅଶ୍ୱ ମାନଙ୍କୁ ଦଉଡେଇ-ଦଉଡେଇ ମୁଁ ମୋ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରବ ।

ହଁ........ହଁ........ ନଶ୍ଚୟ ଦଉଡିବେ, ମୋ ଅଶ୍ୱ ଦଉଡିବେ........

ମୁଁ ଏମିତ ମୋ ଭଙ୍ଗା ମୁଣ୍ଡକୁ ଟେକ ଗର୍ବରେ ଠିଆ ହୋଇଥିବ ।

ଏମିତ........ସବୁ ଦେଖୁଥିବ........ ସର୍ବଦା........ ଭୂତ ଏବଂ ଭବଷ୍ୟତର ମୁକସାକ୍ଷୀ ପର

– ମୁଁ ଅର୍କକ୍ଷେତ୍ର କୋଣାର୍କ ।

ମୁମ୍ବାଇ, ମହାରାଷ୍ଟ୍ର

ଇମେଲ୍ : mamata.dash1234@gmail.com

# ଓଡ଼ିଆପୁଅର ନବକଳେବର ଯାତ୍ରା

ଓଡ଼ିଆପୁଅ ସମ୍ବାଦକକ୍ଷ

ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଆସ୍ଥାନ ପୁରୀ, ସମଗ୍ର ବିଶ୍ୱରେ ରଥଯାତ୍ରାପାଇଁ ପ୍ରସିଦ୍ଧ । କିନ୍ତୁ ଭଗବତ୍ ତତ୍ତ୍ୱ ବ୍ୟତୀରେକ ଶ୍ରୀମନ୍ଦିରରେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଏକ ସାମାନ୍ୟ ମନୁଷ୍ୟପରି ଅନେକ ପ୍ରଥା ପ୍ରଚଳିତ ରହିଛି, ସେଥିମଧ୍ୟରୁ ଗୋଟିଏ ହେଉଛି, ନିଜର ପୁରୁଣା ଶରୀରକୁ ତ୍ୟାଗ କରି ନୂତନ ଶରୀରରେ ପ୍ରବେଶକରିବା, ଯାହାକୁ ନବକଳେବର ବୋଲି କୁହାଯାଏ । ମନ୍ଦିର ନିର୍ମାଣ ହେବାର ଶତାଧିକ ବର୍ଷ ମଧ୍ୟରେ ଅନେକ ଥର ମହାପ୍ରଭୁଙ୍କ କଳେବରକୁ ପରିବର୍ତ୍ତିତ କରାଯାଇଛି, ସାଧାରଣତଃ ୧୨ରୁ ୧୯ ବର୍ଷ ଅନ୍ତରରେ ଥରେ ଏହା ହୋଇଛି । ଏହି ଅନୁଷ୍ଠାନରେ ମନ୍ଦିରର ଚତୁର୍ଦ୍ଧାମୂର୍ତ୍ତି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନଙ୍କ କଳେବରକୁ ନୂତନଭାବେ ନିର୍ମାଣ କରାଯାଇ ପୁରୁଣା ଶରୀରକୁ ନଷ୍ଟ କରିଦିଆଯାଏ । ବିଗତ ନବକଳେବର ୧୯୯୬ ମସିହାରେ ହୋଇଥିଲା । ଚଳିତ ବର୍ଷ ଏହା ଜୁନ ଏବଂ ଜୁଲାଇ ମାସରେ ହେବ । ଏହି ଅନୁଷ୍ଠାନକୁ ସ୍ୱଚକ୍ଷୁରେ ଦେଖିବା ପାଇଁ ଲକ୍ଷାଧିକ ଭକ୍ତ ପୁରୀରେ ପହଞ୍ଚିବାର ଅନୁମାନ କରାଯାଉଛି ।

ଜଗନ୍ନାଥ କେବଳ ହିନ୍ଦୁମାନଙ୍କର ଦେବତା ନୁହନ୍ତି, ସେ ହେଉଛନ୍ତି ସମଗ୍ର ସୃଷ୍ଟିର ଅଧିକାରୀ । ତାଙ୍କର ପୂଜା, ଅନୁଷ୍ଠାନ ଓ ଦିନଚର୍ଯ୍ୟା ଜଣେ ସାମାନ୍ୟ ମନୁଷ୍ୟତୁଲ୍ୟ । ମନ୍ଦିରରେ ପ୍ରସ୍ତୁତ ମହାପ୍ରସାଦକୁ 'ଆଚଣ୍ଡାଳ ବିପ୍ର ପତ୍ରକେ ଭୁଞ୍ଜନ୍ତି' ନ୍ୟାୟରେ ବସୁଦେବ କୁଟୁମ୍ବକମ୍ ତତ୍ତ୍ୱକୁ ସିଦ୍ଧ କରିଆସୁଛି । ଏହି ମହାନ ଜଗନ୍ନାଥ ସଂସ୍କୃତିକୁ ସମଗ୍ର ଦେଶରେ ପ୍ରଚାର କରିବାପାଇଁ ଏକ ଅଭିନବ ପ୍ରୟାସ କରାଯାଉଛି । ଏହି କାର୍ଯ୍ୟକ୍ରମ ଅନ୍ତର୍ରାଷ୍ଟ୍ରୀୟ ଜଗନ୍ନାଥ ଚେତନା ସୋସାଇଟି (International society for Jagannath Consicousness - ISJC) ଏବଂ ନୂଆଦିଲ୍ଲୀର ଅଗ୍ରଣୀ ଓଡ଼ିଆ ସାମାଜିକ ଅନୁଷ୍ଠାନ ଓଡ଼ିଆପୁଅର ସମନ୍ୱୟରେ ଅନୁଷ୍ଠିତ ହେବ ବୋଲି ଜଣାଯାଇଛି ।

'ନବକଳେବର ଯାତ୍ରା' ସମୟରେ ଏକ ସଦୃଶ ରଥରେ ତ୍ରିମୂର୍ତ୍ତିଙ୍କୁ ବସାଯାଇ, ଜଗନ୍ନାଥ ତତ୍ତ୍ୱକୁ ପ୍ରଚାର କରିବା ପାଇଁ ଦିଲ୍ଲୀଠାରୁ ମଇ ୧ ତାରିଖରୁ ଯାତ୍ରାରମ୍ଭ କରି ଜୁନ୍ ୧୪ ତାରିଖରେ ପୁରୀଠାରେ ସମାପନ କରାଯିବାର ଯୋଜନା ରହିଛି ।

ଏଥିରେ କେମିତି ଅଂଶ ଗ୍ରହଣ କରିବେ ?

ଏହି ଯାତ୍ରାରେ ଅଂଶଗ୍ରହଣ କରିବାପାଇଁ ଆପଣଙ୍କୁ କୌଣସି ବିଶେଷ ଯୋଗ୍ୟତାର

ଆବଶ୍ୟକତା ନାହିଁ, ଜାତି ଧର୍ମ ଗୋତ୍ର ନିର୍ବିଶେଷରେ ଯେ କୌଣସି ବ୍ୟକ୍ତି ଏହି ଯାତ୍ରାରେ ସାମିଲ ହୋଇପାରିବେ । ଯାତ୍ରା ସମୟରେ ନିଜ ଅଞ୍ଚଳରେ ଆପଣ ଯାତ୍ରାକୁ ପ୍ରୋତ୍ସାହିତ କରିବା ସହିତ ଆମ ସହ ସାମିଲ ହୋଇ ଯାତ୍ରା ସହିତ ନିଜେ ବି ଭ୍ରମଣ କରିପାରିବେ । ଯାତ୍ରା ସମୟରେ ନବକଳେବର ରଥକୁ ନିଜ ଅଞ୍ଚଳରେ ଭବ୍ୟ ସ୍ୱାଗତ କରିବା ସହିତ ପୂଜା ଆଦର ଆୟୋଜନ, ଜନ ସମାଗମ, ଭଜନ କୀର୍ତ୍ତନ ଆଦି କାର୍ଯ୍ୟକ୍ରମମାନ ଆୟୋଜନ କରିପାରିବେ । (ଏଥିପାଇଁ ପୂର୍ବରୁ ଆୟୋଜନ କମିଟି ସହ ଯୋଗାଯୋଗ କରିବେ, କାରଣ ସମୟକୁ ଦେଖି ଏହି ସବୁ କାର୍ଯ୍ୟକ୍ରମ ହେବ) । ଆପଣ ନିଜ ଯାନରେ ଆମ ରଥ ସହ ଭ୍ରମଣ କରିପାରିବେ ।

ଏହି ଯାତ୍ରା ପାଇଁ ଏକ ପୂର୍ବାନୁମାନ ଏବଂ ଯାତ୍ରାସାରଣୀ ନିର୍ଦ୍ଧାରିତ କରାଯାଇଛି । ଏବଂ ଏହି ଯାତ୍ରା ସମୟରେ ସମଗ୍ର ଦେଶରେ ନବକଳେବର ରଥକୁ ନେଇ ଭ୍ରମଣରେ ଯିବାହେତୁ ଏକ ସ୍ୱୟଂସେବୀ ଦଳ ଗଠନ କରାଯାଉଛି, ଯେଉଁମାନେ ଏହି ଯାତ୍ରା ସମୟରେ ରଥ ସହିତ ଉପସ୍ଥିତ ରହି ବିଭିନ୍ନ କାର୍ଯ୍ୟକ୍ରମର ତଦାରଖ କରିବେ ।

ଆମେ ସମସ୍ତ ଓଡ଼ିଆ ଭାଇଭଉଣୀଙ୍କୁ ଏହି ଯାତ୍ରାରେ ସାମିଲ ହେବାପାଇଁ ନିମନ୍ତ୍ରଣ କରୁଛୁ ।

ନିଜ ନାମ ପଞ୍ଜିକୃତ କରିବାପାଇଁ ଆମ ଇମେଲ୍ ଠିକଣା (odiapuadelhi@gmail.com) କିମ୍ବା ଫୋନ ନମ୍ବର (09899808330/ 011-26503518 7838355544 (Mahesh Barik)) ରେ ଯୋଗାଯୋଗ କରନ୍ତୁ ।

ନବକଳେବର ଯାତ୍ରା ସାରଣୀ

| ଯାତ୍ରା ଦିବସ | ତାରିଖ | ଯୋଜନା |
|---|---|---|
| ୧ | ୧ ମଇ | ଦିଲ୍ଲୀ |
| ୨ | ୨ ମଇ | ଦିଲ୍ଲୀରୁ ଅମୃତସର |
| ୩ | ୩ ମଇ | ଅମୃତସର, କଟ୍ରା |
| ୪ | ୪ ମଇ | କଟ୍ର, ଅମ୍ବାଲା, ଚଣ୍ଡୀଗଡ଼ |
| ୫ | ୫ ମଇ | ଚଣ୍ଡିଗଡ଼, ହରିଦ୍ୱାର |
| ୬ | ୬ ମଇ | ହରିଦ୍ୱାର, (ଦିଲ୍ଲୀ ପ୍ରତ୍ୟାବର୍ତ୍ତନ) |
| ୭ | ୭ ମଇ | ଦିଲ୍ଲୀ |
| ୮ | ୮ ମଇ | ଗୁଡ଼ଗାଓଁ, ଫରିଦାବାଦ, ବୃନ୍ଦାବନ |
| ୯ | ୯ ମଇ | ବୃନ୍ଦାବନ |

| | | |
|---|---|---|
| ୧୦ | ୧୦ ମଇ | ବୃନ୍ଦାବନ, ଆଗ୍ରା |
| ୧୧ | ୧୧ ମଇ | ଆଗ୍ରା ଠାରୁ ଜୟପୁର |
| ୧୨ | ୧୨ ମଇ | ଜୟପୁର, ଉଦୟପୁର |
| ୧୩ | ୧୩ ମଇ | ଉଦୟପୁର, (ଅହମଦାବାଦ୍ ଯାତ୍ରା) |
| ୧୪ | ୧୪ ମଇ | ଅହମ୍ମଦାବାଦ |
| ୧୫ | ୧୫ ମଇ | ଅହମଦାବାଦ ଠାରୁ ଦ୍ୱାରକା |
| ୧୬ | ୧୬ ମଇ | ଦ୍ୱାରକାଧାମ |
| ୧୭ | ୧୭ ମଇ | ଦ୍ୱାରକାଠାରୁ ସୋମନାଥ ଏବଂ ଭଡ଼ୋଦରା (ବରୋଦା) |
| ୧୮ | ୧୮ ମଇ | ଭଡ଼ୋଦରା |
| ୧୯ | ୧୯ ମଇ | ଭଡ଼ୋଦରା ଠାରୁ ସୁରତ |
| ୨୦ | ୨୦ ମଇ | ସୁରତ ଠାରୁ ମୁମ୍ବାଇ |
| ୨୧ | ୨୧ ମଇ | ମୁମ୍ବାଇ |
| ୨୨ | ୨୨ ମଇ | ମୁମ୍ବାଇ ଠାରୁ ନାସିକ |
| ୨୩ | ୨୩ ମଇ | ନାସିକ୍ ଠାରୁ ଶିରଡ଼ି |
| ୨୪ | ୨୪ ମଇ | ଶିରଡ଼ିଠାରୁ ପୁନେ |
| ୨୫ | ୨୫ ମଇ | ପୁନେ ଠାରୁ ବାଙ୍ଗାଲୁରୁ |
| ୨୬ | ୨୬ ମଇ | ବାଙ୍ଗାଲୁରୁ |
| ୨୭ | ୨୭ ମଇ | ବାଙ୍ଗାଲୁରୁଠାରୁ ରାମେଶ୍ୱରମ୍ |
| ୨୮ | ୨୮ ମଇ | ରାମେଶ୍ୱରମ୍ |
| ୨୯ | ୨୯ ମଇ | ରାମେଶ୍ୱରମ୍ ଠାରୁ ଚେନ୍ନାଇ (ମାଡ୍ରାସ୍) |
| ୩୦ | ୩୦ ମଇ | ଚେନ୍ନାଇଠାରୁ ତିରୁପତି |
| ୩୧ | ୩୧ ମଇ | ତିରୁପତି |
| ୩୨ | ୧ ଜୁନ୍ | ତିରୁପତି ଠାରୁ ବିଶାଖାପାଟଣା |
| ୩୩ | ୨ ଜୁନ୍ | ବିଶାଖାପାଟଣା |
| ୩୪ | ୩ ଜୁନ୍ | ବିଶାଖାପାଟଣା ଠାରୁ ରାୟପୁର |
| ୩୫ | ୪ ଜୁନ୍ | ବିଳାସପୁର |

| | | |
|---|---|---|
| ୩୬ | ୫ ଜୁନ୍ | ବିଳାସପୁର ଠାରୁ ନାଗପୁର |
| ୩୭ | ୬ ଜୁନ୍ | ନାଗପୁରଠାରୁ ଇନ୍ଦୋର୍ |
| ୩୮ | ୭ ଜୁନ୍ | ଇନ୍ଦୋର ଠାରୁ ଭୋପାଳ |
| ୩୯ | ୮ ଜୁନ୍ | ଭୋପାଳଠାରୁ କାନପୁର |
| ୪୦ | ୯ ଜୁନ୍ | କାନପୁର ଠାରୁ ଲକ୍ଷ୍ନୌ |
| ୪୧ | ୧୦ ଜୁନ୍ | ଲକ୍ଷ୍ନୌ ଠାରୁ ବାରଣସୀ |
| ୪୨ | ୧୧ ଜୁନ୍ | ବାରଣାସୀଠାରୁ ଗୟା, ପାଟନା |
| ୪୩ | ୧୨ ଜୁନ୍ | ପାଟଣା ଠାରୁ ଗୌହାଟି |
| ୪୪ | ୧୩ ଜୁନ୍ | ଗୌହାଟି ଠାରୁ କୋଲକାତା (କଲିକତା) |
| ୪୫ | ୧୪ ଜୁନ୍ | କୋଲକାତାଠାରୁ ପୁରୀ |
| ୪୬ | ୧୫ ଜୁନ୍ | ପୁରୀରେ ନବକଳେବର |

ଆମେ ପୁଣିଥରେ କହିଦେଉଛୁ ଯେ ଏହି ଯାତ୍ରାରେ ଅଂଶଗ୍ରହଣ କରିବାକୁ କୌଣସି ବାଧ୍ୟବାଧକତା ନାହିଁ । ଏହା ସମ୍ପୂର୍ଣ୍ଣତଃ ସ୍ୱେଚ୍ଛାକୃତ ଭାବରେ ଅଂଶଗ୍ରହଣ ପାଇଁ ଇଚ୍ଛୁକ ଭକ୍ତମାନଙ୍କ ଯାତ୍ରା । ସମଗ୍ର ଯାତ୍ରା ପଥରେ ଆମ ସହ ଅନେକ ସ୍ୱେଚ୍ଛାସେବୀ ଉପସ୍ଥିତ ରହି ଯାତ୍ରାକୁ ସଫଳ କରିବାକୁ ପ୍ରୟାସ କରିବେ । ସମସ୍ତ ଜଗନ୍ନାଥ ପ୍ରେମୀ ଓ ଓଡ଼ିଆ ଭାଇଭଉଣୀ ଏହି ଯାତ୍ରାରେ ସକ୍ରିୟ ଅଂଶ ଗ୍ରହଣ କରି ଯାତ୍ରାକୁ ସଫଳ କରିବାକୁ ନିବେଦନ କରୁଛୁ ।

ଶ୍ରୀ ଶ୍ୟାମସୁନ୍ଦର ସାହୁ
ଯାତ୍ରା ସଂଯୋଜକ

09899808330/01126503518

Email: odiapuadelhi@gmail.com

[ ମୂଳ ଇଂରେଜୀ ସମ୍ବାଦର ଓଡ଼ିଆ ଭାଷାନ୍ତରଣ : ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ ]

# ଆମ ଓଡ଼ିଶା

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



ସ୍ୱତନ୍ତ୍ରଉତ୍କଳ ପ୍ରଦେଶ ଭାରତୀୟ ଉପମହାଦ୍ୱୀପର ଦକ୍ଷିଣ-ପୂର୍ବ କୋଣରେ ଅବସ୍ଥିତ ଏକ ରାଜ୍ୟ । ଉତ୍ତରରେ ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ, ଦକ୍ଷିଣରେ ଆନ୍ଧ୍ରପ୍ରଦେଶ ଓ ତେଲେଙ୍ଗାନା, ପଶ୍ଚିମରେ ଛତିଶଗଡ଼ ଓ ପୂର୍ବରେ ବଙ୍ଗୋପସାଗରଦ୍ୱାରା ପରିବେଷ୍ଟିତ ଆମ ରାଜ୍ୟ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଏକ ରାଜ୍ୟ । ଭାରତରେ ଥିବା ୨୯ଟି ରାଜ୍ୟମଧ୍ୟରେ ସ୍ଥଳଭାଗର କ୍ଷେତ୍ରଫଳ ହିସାବରେ ଦେଶରେ ନବମ ବଡ଼ରାଜ୍ୟ ହେଉଛି ଓଡ଼ିଶା । ଓଡ଼ିଆ ହେଉଛି ଆମ ରାଜ୍ୟର ରାଜ୍ୟଭାଷା ।

ଆମ ରାଜ୍ୟର ଅତୀତ ଅତ୍ୟନ୍ତ ଗୌରବମୟ । ଯେଉଁ ରାଜ୍ୟରେ ଦେବତା ମନୁଷ୍ୟରୂପରେ ଆସି ଲୀଳାଖେଳ କରୁଛନ୍ତି ସେହି ରାଜ୍ୟ ଅତୀତରେ ଥିଲା ଅପରାଜେୟ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କଳିଙ୍ଗ ସାମ୍ରାଜ୍ୟ ଅତୀତରେ ଭାରତର ଏକ ପ୍ରମୁଖ ରାଜ୍ୟଥିଲା । ୨୬୧ ଖ୍ରୀଷ୍ଟପୂର୍ବରେ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ନରସଂହାର ଫଳରେ ଏହି ରାଜ୍ୟର ପତନ ଘଟିଥିଲା ଏବଂ ଏହାପରେ ଯାହା ରହିଯାଇଥିଲା ତାହା ବର୍ତ୍ତମାନର ଓଡ଼ିଶା କହିଲେ ଅତ୍ୟୁକ୍ତି ହେବନାହିଁ । କେବଳ ଭାଷା ଭିତ୍ତିକ ରାଜ୍ୟ ଭାବରେ ଜନ୍ମ ନେଇଥିବା ଓଡ଼ିଶା ପରାଧୀନ ଭାରତରେ ଏକ ଅଞ୍ଚଳ ଭାବରେ ସ୍ୱାଧୀନତା ପାଇଥିଲା ଅପ୍ରେଲ ୧ ତାରିଖ ୧୯୩୬ ମସିହାରେ, ସେହି ଦିନରୁ ଏହି ଦିବସକୁ ଉତ୍କଳ ଦିବସ ଭାବରେ ପାଳନ କରାଯାଉଛି । ଯଦିଓ ଆମ ରାଜ୍ୟର ନାମ ଓଡ଼ିଶା ତଥାପି ଆମ ଇତିହାସରେ ଏହାକୁ ଉତ୍କଳ ବା ଉତ୍କୃଷ୍ଟ କଳାର ଦେଶ ଭାବରେ ବ୍ୟାଖ୍ୟା କରାଯାଇଛି । ଏହା ଭାରତର ରାଷ୍ଟ୍ରୀୟ ସଙ୍ଗୀତ (ଜନ ଗଣ ମନରେ) ରେ ମଧ୍ୟ ଉଲ୍ଲେଖ ରହିଛି । ୧୧୩୫ ଖ୍ରୀଷ୍ଟାବ୍ଦରେ ମହାରାଜା ଅନନ୍ତବର୍ମନ ଚୋଡ଼ଗଙ୍ଗ ଉତ୍କଳକୁ ଜୟକରି କରୁଥିବା ସମୟରେ କଟକକୁ ନିଜର ରାଜଧାନୀ ଭାବରେ ଘୋଷଣା କରିଥିଲେ ଯାହା ଦୀର୍ଘ ଅନେକ

ଶତାବ୍ଦୀ ଧରି ଓଡ଼ିଶାର ରାଜଧାନୀ ହୋଇ ରହିଥିଲା । ୧୯୪୮ ମସିହାରେ ଏହାକୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ କରାଯାଇଥିଲା ।

ଓଡ଼ିଶାର ନାମକରଣ ବିଷୟରେ ଅନେକ ତଥ୍ୟ ଗବେଷଣାକାରଙ୍କ ପାଖରେ ଉପଲବ୍ଧ ରହିଛି । ଅତୀତରେ ଓଡ଼ିଶାକୁ ଉଡ୍ର ଦେଶ ବୋଲି କୁହାଯାଉଥିବା କଥା ଅନେକ କଥାସାହିତ୍ୟରେ ଦେଖିବାକୁ ମିଳେ । ପାଲି ଭାଷାରେ ଏହି ରାଜ୍ୟର ପ୍ରଜାଙ୍କୁ ଓଡ଼କ ବୋଲି କୁହାଯାଉଥିବା କଥା ଦେଖିବାକୁ ମିଳେ । ଶାରଳା ଦାସ ଓଡ଼ିଆ ମହାଭାରତରେ ଆମ ରାଜ୍ୟର ନାମ ଓଡ୍ର ରାଷ୍ଟ୍ର ବା ଓଡ଼ିଶା ବୋଲି ଉଲ୍ଲେଖ କରିଛନ୍ତି । ସେହିପରି ଗଜପତି ବଂଶଜ ରାଜା କପିଳେନ୍ଦ୍ରଦେବ (୧୪୩୫-୬୭ ମସିହା) ପୁରୀ ଶ୍ରୀମନ୍ଦିର ବେଢ଼ାରେ ଥିବା ଅନେକ ଲିପିରେ ଏହି ଅଞ୍ଚଳକୁ ଓଡ଼ିଶା ବା ଓଡ଼ିଶା ରାଜ୍ୟ ବୋଲି ଉଲ୍ଲେଖ କରିଛନ୍ତି ।

ଓଡ଼ିଶା ରାଜ୍ୟ ବିଷୟରେ ଅତୀତର ମହାଗ୍ରନ୍ଥ ମହାଭାରତ, ବାୟୁପୁରାଣ ଏବଂ ମହାଗୋବିନ୍ଦ ସୁତ୍ତାନ୍ତରେ ଉଲ୍ଲେଖ ରହିଛି । ଓଡ଼ିଶାର ଶବର ଜାତିର ଲୋକଙ୍କ ବିଷୟରେ ମହାଭାରତରେ ଉଲ୍ଲେଖ ରହିଛି । ଇତିହାସ କୁହେ ମୌର୍ଯ୍ୟ ସମ୍ରାଟ ଅଶୋକ ଉତ୍କଳକୁ ଜୟ କରିବା ଆଶାରେ କରିଥିବା ଯୁଦ୍ଧରେ ଅନ୍ୟୁନ ଦଶ ଲକ୍ଷ ଓଡ଼ିଆ ପ୍ରାଣ ହରାଇଥିବା ବେଳେ ପନ୍ଦର ଲକ୍ଷ ଓଡ଼ିଆଙ୍କୁ ସେ ପଣବନ୍ଦୀ କରି ରଖିଥିଲେ । ଏହି ବିଶାଳ ଯୁଦ୍ଧକୁ ଆମେ କଳିଙ୍ଗ ଯୁଦ୍ଧ ବୋଲି କୁହାଯାଏ । ଯୁଦ୍ଧର ବିଭିଷୀକା ଏତେ ଥିଲା ଯେ ଦୟାନଦୀର ଜଳ ରକ୍ତରେ ଲାଲ୍ ହୋଇଯାଇଥିଲା । ଏହା ଦେଖି ଅଶୋକ ଯୁଦ୍ଧ ତ୍ୟାଗ କରି ଶାନ୍ତି ପଥର ଯାତ୍ରୀ ହୋଇଥିଲେ ଏବଂ ସେ ବୌଦ୍ଧ ଧର୍ମକୁ ଆପଣେଇ ନେବା ସହ ବିଶ୍ୱରେ ବୌଦ୍ଧ ଧର୍ମର ପ୍ରଚାର ପ୍ରସାର ପାଇଁ ଅନେକ କାର୍ଯ୍ୟ କରିଥିଲେ ।

୧୫୦ ଖ୍ରୀଷ୍ଟପୂର୍ବ ବେଳକୁ ଜୈନ ସମ୍ରାଟ ଖାରବେଳ ଓଡ଼ିଶାକୁ ରାଜୁତି କରିବା ସହ ଭାରତ ଭୂଖଣ୍ଡର ଏକ ବିସ୍ତୃତ ଅଞ୍ଚଳକୁ ଅକ୍ତିଆର କରିଥିଲେ । ସେ ଉଦୟଗିରି ଗୁମ୍ଫାରେ କୀର୍ତ୍ତିମାନ ନିର୍ମାଣ କରାଇଥିଲେ । ତାଙ୍କ ପରେ ସମୁଦ୍ରଗୁପ୍ତ, ଶଶାଙ୍କ ଆଦି ରାଜା ମାନେ ଓଡ଼ିଶାକୁ ରାଜୁତି କରିଥିଲେ । ପରେ ସୋମବଂଶୀ ରାଜା ଯଯାତି (ଖ୍ରୀଷ୍ଟାବ୍ଦ ୧୦୨୫) ଙ୍କ ଦ୍ୱାରା ଓଡ଼ିଶାରେ ଅନେକ ମନ୍ଦିରର ନିର୍ମାଣ ହୋଇଥିଲା । ସେ ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ । ଅନନ୍ତବର୍ମନ ଚୋଡ଼ଗଙ୍ଗ ଜଗନ୍ନାଥ ମନ୍ଦିରର

ପୁନରୋଦ୍ଧାର ଏବଂ ନିର୍ମାଣ କରାଇଥିଲେ, ନରସିଂହଦେବ କୋଣାର୍କ ମନ୍ଦିରର ନିର୍ମାଣ କରାଇଥିଲେ ।

ସମଗ୍ର ଦେଶରେ ମୋଗଲ ସାମ୍ରାଜ୍ୟର ବ୍ୟାପ୍ତି ହେଉଥିବା ବେଳେ ଓଡ଼ିଶା ଏହାଠାରୁ ବହୁ ଦୂରରେ ଥିଲା କିନ୍ତୁ ଶେଷ ଓଡ଼ିଆ ସମ୍ରାଟ ମୁକୁନ୍ଦଦେବ ଯୁଦ୍ଧରେ ପ୍ରାଣ ହାରିବା ପରେ ରାମଚନ୍ଦ୍ର ଭଞ୍ଜ ଓଡ଼ିଶାରେ ମୋଗଲ ସାମ୍ରାଜ୍ୟର ଉତଥାନ କରିବାକୁ ସ୍ୱପ୍ନ ଦେଖିଥିଲେ । କିନ୍ତୁ ସେ ବି ଯୁଦ୍ଧରେ ପ୍ରାଣ ହାରିବା ପରେ ଅନେକ ଲୋକ ଏଠାରେ ନିଜର ଶକ୍ତି ପ୍ରଦର୍ଶନ କରିଥିଲେ ହେଲେ ଶେଷରେ ୧୭୫୧ ମସିହାରେ ବଙ୍ଗଳାର ନବାବ ଆଲିବର୍ଦ୍ଦି ଖାନ୍ ଏହି ଅଞ୍ଚଳକୁ ମରାଠା ସାମ୍ରାଜ୍ୟ ସହ ଯୋଡ଼ିଦେଇଥିଲେ ।

ବ୍ରିଟିଶ ସାମ୍ରାଜ୍ୟ ସମୟରେ ଦକ୍ଷିଣ ଓଡ଼ିଶାର କିଛି ଅଂଶକୁ ମାଡ୍ରାସ୍ ପ୍ରେସିଡେନ୍ସି ଏବଂ ଉତ୍ତରାଞ୍ଚଳକୁ ବେଙ୍ଗାଲ୍ ପ୍ରେସିଡେନ୍ସି ଅନ୍ତର୍ଭୁକ୍ତ କରାଯାଇଥିଲା । ଏହି ସମୟରେ ଓଡ଼ିଶାରେ ବକ୍ସି ଜଗବନ୍ଧୁ ଏବଂ ଜୟୀ ରାଜଗୁରୁ ଆଦି ଆଞ୍ଚଳିକ ମୁଖ୍ୟମାନେ ଇଂରେଜ ସରକାରଙ୍କ ବିରୋଧରେ ଆନ୍ଦୋଳନ କରିଥିଲେ, ଯଦିଓ ପ୍ରଥମ ସିପାହୀ ବିଦ୍ରୋହ ଓଡ଼ିଶାର ଖୋର୍ଦ୍ଧା ଗଡ଼ରୁ ଆରମ୍ଭ ହୋଇଥିଲା, ଏହାକୁ ଖୁବ୍ ଶୀଘ୍ର ଦମନ କରାଯାଇଥିଲା ଏବଂ ସେଇଥିପାଇଁ ଏହାକୁ ଇତିହାସକାର ମାନେ କୌଣସି ଗୁରୁତ୍ୱ ଦେଇନଥିଲେ । ବିଭିନ୍ନ ଇତିହାସ ପୁସ୍ତିକାରେ ସିପାହୀ ବିଦ୍ରୋହକୁ ମଙ୍ଗଳପାଣ୍ଡେଙ୍କ ସହ ଯୋଡ଼ି ଦେଖାଯାଏ ହେଲେ ପ୍ରକୃତ ସିପାହୀ ବିଦ୍ରୋହ ଓଡ଼ିଶାରେ ୧୮୧୮ ମସିହାରେ ହୋଇଥିଲା । ୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷ ସମୟରେ ବ୍ରିଟିଶ ସରକାରଙ୍କ ଅପାରଗତା ଓ ଆମ ଓଡ଼ିଆ ଲୋକଙ୍କ ନେତୃତ୍ୱହୀନତା ହେତୁ ଅନ୍ୟୁନ ଦଶଲକ୍ଷ ଲୋକଙ୍କ ପ୍ରାଣ ଚାଲିଗଲା ।

୧୯୦୩ ମସିହାରେ କୁଳବୃଦ୍ଧ ମଧୁସୁଦନଙ୍କ ନେତୃତ୍ୱରେ ପାରଳାଖେମୁଣ୍ଡିର ତତ୍କାଳୀନ ରାଜା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ  ଉତ୍କଳ ସମ୍ମିଳନୀର ସ୍ଥାପନା କରାଯାଇଥିଲା । ସେହି ସମୟରେ ବଙ୍ଗଳା ଭାଷାଭାଷୀ ଶିକ୍ଷକ ମାନଙ୍କୁ ଓଡ଼ିଶାରେ ଅବସ୍ଥାପିତ କରାଇ ଓଡ଼ିଆ ଭାଷାର ଅବସ୍ଥିତିକୁ ସଂକଟାପର୍ନ୍ନ ଅବସ୍ଥାକୁ ନେଇଯାଉଥିବା କିଛି ରାଜନୈତିକ ଷଡ଼ଯନ୍ତ୍ରକୁ ଉତ୍କଳ ସମ୍ମିଳନୀ ସାହାସର ସହ ମୁକାବିଲା କରିବା ପରେ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ବୋଲି ସିଦ୍ଧ ହୋଇଥିଲା ଏବଂ




ଏହି ଭିତ୍ତିରେ ଅପ୍ରେଲ ୧ ତାରିଖ ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହୋଇଥିଲା । ସାର୍ ଜନ୍ ଅଷ୍ଟିନ୍ ହବାକ ସ୍ୱାଧୀନ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ରହିଥିବା ବେଳେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ନିଯୁକ୍ତ ହୋଇଥିଲେ । ଭାରତ ସ୍ୱାଧୀନ ହେବାପରେ ୧୯୪୭ ମସିହା ଡିସେମ୍ବର ୨୭ ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଭାରତୀୟ ଗଣତନ୍ତ୍ରର ଅଂଶ ହୋଇଥିଲା ।

ବର୍ଷ ୨୦୧୧ର ଜନଗଣନା ଅନୁସାରେ ଓଡ଼ିଶାର ଜନସଂଖ୍ୟା ୪୧,୯୪୭,୩୫୮ ଏବଂ ଏଥିରୁ ୨୧,୨୦୧,୬୭୮ (୫୦.୫୪%) ପୁରୁଷ ଏବଂ ୨୦,୭୪୫,୬୮୦ (୪୯.୪୬%) ମହିଳା ରହିଥିବା ବେଳେ ରାଜ୍ୟର ପୁରୁଷ ମହିଳା ଅନୁପାତ ୧୦୦୦ ରେ ୯୭୮ ବୋଲି ଜଣାଯାଇଛି । ଓଡ଼ିଶାର ଜନସଂଖ୍ୟାର ୮୧.୮% ଲୋକ ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଥିବା ବେଳେ ଅନ୍ୟମାନେ ବଙ୍ଗଳା, ହିନ୍ଦୀ, ତେଲୁଗୁ ଓ ସାନ୍ଥାଳୀ ଭାଷାରେ ବାର୍ତ୍ତାଳାପ କରୁଥିବା ଜଣାପଡ଼େ । ଓଡ଼ିଶାର ଜନସଂଖ୍ୟାର ୩୮.୬୬% ଭାଗ ଅନୁସୁଚିତ ଜାତି ଓ ଜନଜାତି ବର୍ଗର ଯେଉଁଥିରେ ବଣ୍ଡା, ସାନ୍ତାଳ, ମୁଣ୍ଡା, ଓରାଁ, କନ୍ଧ, ମହାଲି ଇତ୍ୟାଦି ଅନ୍ତର୍ଭୁକ୍ତ ।

ବୀମାନଗର, ୨ୟ ଗଳି, ବ୍ରହ୍ମପୁର
ଫୋନ୍ : ୯୦୪୦୯୮୫୪୬୩
ଇ-ମେଲ୍ : aahwaan@gmail.com

# ଯାଯାବର

ଅନୁପମ ବେହେରା



ମୁଁ ଯେ ଏକ ଯାଯାବର, ନାହିଁ ମୋର ଠିକଣା ।
ଯାଉଛୁ ମୁଁ କେଉଁଆଡେ, ମୋତେ ବ ତା ଅଜଣା ॥

ମୋ କଥାର ମୋ ବାର୍ତ୍ତାର, କଛୁ ମୂଲ୍ୟ ଥାଏନା ।
କେହ କହେ ପାଗଳ, ଆଉ କେହ ଶୁଣେନା ॥

ନାହିଁ ଘର ନାହିଁ ଦ୍ୱାର, ନାହିଁ ମୋର ଠିକଣା ।
ଯାଉଛୁ ମୁଁ କେଉଁଆଡେ, ମୋତେ ବ ତା ଅଜଣା ॥

କେବେ ଗାଳ କେବେ ଗୁଲଜ, ଆଉ କେବେ ଲାଞ୍ଛନା ।
ସତେ ଯେମିତ ମୁଁ ଗୋଟେ, ଘାସ ଅନାବନା ॥

ନାହିଁ ସାଙ୍ଗ ନାହିଁ ସାଥୀ, କେହ ନାହିଁ ମୋର ଚହ୍ନା ।
ଯାଉଛୁ ମୁଁ କେଉଁଆଡେ, ମୋତେ ବ ତା ଅଜଣା ॥

କେବେ ଖାଏ କେବେ ନାହିଁ, ପୁଣି କେବେ ମିଳେନା ।
ବଞ୍ଚିଛୁ ମୁଁ ଏଠି କଛୁ, ପରଚୟର ବନା ॥

ନାହିଁ ନଦ ନାହିଁ ସ୍ୱପ୍ନ, ନାହିଁ ମୋ ମନେ ଭାବନା ।
ଯାଉଛୁ ମୁଁ କେଉଁଆଡେ, ମୋତେ ବ ତା' ଅଜଣା ॥

ବାରବୁଲା ବୋଲ ମୋତେ, ଦଅନାହିଁ ଲାଞ୍ଛନା ।
ଥରେ ଆସି ମୋ କାହାଣୀ, ତୁମେ ଶୁଣି ଯାଅନା ॥

କାହିଁକ ଆସିଲ ମୁଁ ଧରାକୁ, ତା' କାରଣ ମିଳେନା ।
କାହିଁ ଆଜ ଫେରୁଛୁ, ତା' ବ ମୋତେ ଅଜଣା ॥

ମୁଁ ଯେ ଏକ ଯାଯାବର, ପାଇଛୁ ମୋ ଠିକଣା ।
ଯାଉଛୁ ମୁଁ ମୃତ୍ୟୁଲୋକ, ମୃତ୍ୟୁ ମୋର ଆପଣା ॥

# ପ୍ରୋଟିନ୍ ପଲଉ

କୁନ୍ଦ ମିଶ୍ର



ଉପକରଣ : ଅରୁଆ ଗୃଉଳ - ୫୦୦ ଗ୍ରାମ, ପିଆଜ - ବଡ଼ ୩ଟା, ନ୍ୟୁଟ୍ରିନ୍ (ସୋୟା ବଡ଼ି) - ୧୦୦ ଗ୍ରାମ, ଗାଜର - ୧ଟା ବଡ଼, ବନ୍‌ସ - ୧୦୦ ଗ୍ରାମ, ମଟର - ୫୦ ଗ୍ରାମ, ଫୁଲକୋବ - ୧୦୦ ଗ୍ରାମ, କଞ୍ଚାଲଙ୍କା - ୨ଟା, ରିଫାଇନ୍ ତେଲ - ୪ ଚାମଚ, ଲବଙ୍ଗ - ୫-୬ଟା, ଡାଲଚିନି ଓ ଗୁଜୁରାତି ଗୁଣ୍ଡ - ୧ ବଡ଼ ଚାମଚ, ତେଜପତ୍ର - ୩ଟା, ଜୀରା - ୫-୬ଟା, ଗୁଆଘିଅ - ୧ ଚାମଚ, ଲୁଣ ସ୍ୱାଦାନୁସାର

ପ୍ରଣାଳୀ : - ପ୍ରଥମେ ଗୃଉଳକୁ ଭଲ ଭାବରେ ଧୋଇଦେଇ ଛାଣି ଶୁଖେଇ ରଖନ୍ତୁ । ପିଆଜକୁ ପତଳା ପତଳା କରି ଲମ୍ବା ଲମ୍ବା ଖଣ୍ଡ କରି କାଟି ରଖନ୍ତୁ । ବନସ୍ ଓ ଗାଜରକୁ ଛୋଟ ଛୋଟ ଖଣ୍ଡ ଏବଂ ଫୁଲ କୋବକୁ ବଡ଼ ବଡ଼ ଖଣ୍ଡ କରି କାଟି ରଖନ୍ତୁ । ନ୍ୟୁଟ୍ରିନ୍ ସୋୟା ବଡ଼ିକୁ ଗରମ ପାଣିରେ କିଛି ସମୟ ବୁଡ଼ିଦେବାପରେ ଚିପୁଡ଼ିକରି ପାଣି ସବୁ ବାହାର କରି ଦେଇ ରଖନ୍ତୁ ।

ଚୁଲିରେ ପ୍ରେସର କୁକର୍ ବସାନ୍ତୁ । ସେଥିରେ ରିଫାଇନ୍ ତେଲ ପକାନ୍ତୁ । ତେଲ ଗରମ ହେବାପରେ ସେଥିରେ ଜୀରା, ଲବଙ୍ଗ ଓ ତେଜପତ୍ର ଦେଇ ଭାଜନ୍ତୁ । ତା'ପରେ ସେଥିରେ କଟାଯାଇଥିବା ପିଆଜ ପକାଇ ଅଳ୍ପ ଭାଜନ୍ତୁ । ଭାଜ ହୋଇଯିବା ପରେ ସେଥିରେ ଗାଜର, ବନ୍‌ସ ଓ ଫୁଲକୋବ ଖଣ୍ଡ ପକାଇ ଭାଜନ୍ତୁ । ଏ ସବୁ ଅଳ୍ପ ଭାଜ ହୋଇଯିବା ପରେ ସେଥିରେ ଗୃଉଳ ପକାଇ ଭାଜନ୍ତୁ । ଗୃଉଳ ଭାଜ ହୋଇଯିବା ପରେ ସେଥିରେ ସୋୟାବଡ଼ି ପକାଇ ଭାଜନ୍ତୁ । ସବୁ ଭଜା ହୋଇଯିବା ପରେ ଯେତିକି ଗୃଉଳ ନେଇଥିବେ ତାହାର ଦୁଇଗୁଣା ପାଣି ଓ ଲୁଣ ପକାଇ ପ୍ରେସର କୁକରର ଢାଙ୍କୁଣୀ ବନ୍ଦ କରିଦିଅନ୍ତୁ । ଉଚ୍ଚ ଆଞ୍ଚରେ ଗୋଟିଏ ହ୍ୱିସିଲ୍ ଆସିବା ପରେ ଚୁଲି ବନ୍ଦ କରିଦିଅନ୍ତୁ । ହ୍ୱିସିଲ୍ ବନ୍ଦ ହେବାପରେ କୁକରକୁ ଖୋଲି ସେଥିରେ ଡାଲଚିନି ଗୁଣ୍ଡ ଏବଂ ଗୁଆଘିଅ ପକାଇ ଭଲ ଭାବରେ ଘାଣ୍ଟି ପରସନ୍ତୁ । ଏହି ପଲଉ ରାଇତା ସାଙ୍ଗରେ ଖାଇବାକୁ ଭଲ ଲାଗେ ।

ଭୁବନେଶ୍ୱର

# ବାସ୍ନା ବାସ୍ନା ସ୍ୱପ୍ନ ଓ ଅମାବାସ୍ୟା ରାତ୍ରି

ମଧୁମିତା ମହାନ୍ତି (ମିତୁ)



ଦିବ୍ୟା ମୋ ଦେହକୁ ଲାଗି ବସିଥିଲା ମୋ ପଛରେ । ତା'ର ସେ ଛୁଆଁ ଲାଗି ମୋ ଦେହରେ ତଡ଼ିତ୍‌ର ପ୍ରବାହ । ବାବାଙ୍କୁ ପ୍ରମିସ୍ କରିଥିଲି, ସେଇଥିପାଇଁ ନିଶ୍ଚିତଭାବରେ ମୋ ବାଇକର ଗତିଠାରୁ କ୍ଷୀପ୍ର ଥିଲା ମୋ ଶିରାପ୍ରଶିରା ଭିତରର ଶୋଣିତର ତୀବ୍ରତା ।

ମୁଁ ଅମିତ ଦାସ - ପ୍ଲସ୍ ଟୁ ସାଇନ୍‌ସ - ରୋଲ୍ ନମ୍ବର ୱାନ୍ ଥ୍ରୀ ୱାନ୍ - କର୍ଣ୍ଣାପୁର କଲେଜ ମୋ ଠିକଣା । କଲେଜର ସମସ୍ତଙ୍କର ନଜରରେ ମୁଁ, କାରଣ ମୁଁ ବେଶ ଭଲ ଛାତ୍ର । ମୋ ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ । ଟେନ୍‌ଥ କ୍ଲାସର ରିଜଲ୍ଟ ମୋର ଖୁବ୍ ଆଖି ଦୃଶିଆ ଥିଲା । ସିଜିପିଏ ଟେନ୍ । ସେଥିପାଇଁ ସମସ୍ତଙ୍କର ନଜର ମୋ ଉପରେ । ଅଧାପକ ଅଧାପିକା ମାନଙ୍କର ଦୃଷ୍ଟି କେବଳ ପ୍ଲସ୍ ଟୁ ରିଜଲ୍ଟ ଉପରେ । ନିଶ୍ଚୟ ଖୁବ୍ ଭଲ କରିବି - ଏ ବିଶ୍ୱାସ ସମସ୍ତଙ୍କ ମନରେ ଦୃଢ଼ୀଭୂତ । ମୋ ବାବା ମା'ଙ୍କ ନଜର କିନ୍ତୁ ଖୁବ୍ ଦୂର ଯାଏଁ ଲମ୍ବିଛି । ଆଇ ଆଇ ଟି ପରେ ଅତି ଭଲ ଚାକିରୀଟିଏ କରି ବିଦେଶକୁ ଉଡ଼ିଯିବା ପର୍ଯ୍ୟନ୍ତ ସେମାନଙ୍କ ସ୍ୱପ୍ନ । ମୁଁ ବାଧ୍ୟ ଛାତ୍ର - ଅତି ବାଧ୍ୟ ସନ୍ତାନଟିଏ ବି । ଦଶମର ପରୀକ୍ଷାଫଳ ବାହାରିବା ଦିନ ସେମାନଙ୍କ ଆନନ୍ଦ - ମା ଆଖିର ଖୁସିର ଲୁହ ଦେଖି ମୁଁ ପ୍ରତିଜ୍ଞା କରିଥିଲି, ସେ ଦୁହିଁଙ୍କ ସ୍ୱପ୍ନ ନିଶ୍ଚୟ ପୂରଣ କରିବି ।

କଲେଜ ମୋ ପାଇଁ ଗୋଟାଏ ନୂତନ ଅଭିଜ୍ଞତା ଥିଲା । ସ୍କୁଲର କଟକଣା କିଛି ଏଠି ନଥିଲା । ଇଚ୍ଛା କଲେ ମଣିଷ ଏଠି ମୁକ୍ତ ପକ୍ଷୀଟିଏ ପାଲଟି ଯିବା କିଛି ଅସମ୍ଭବ ନଥିଲା । ମୁଁ ବି ଉଡ଼ିବା ଶିଖୁଥିଲି - ହେଲେ ଗୃହଆଡ଼କୁ ନଜର ବି ରଖିଥିଲି । ସୁବ୍ରତ, ନନ୍ଦନ, ପ୍ରଶାନ୍ତ, ବୈଭବ ସମସ୍ତଙ୍କ ସହ ସାଙ୍ଗ ହେଉଥିଲେ ବି ସେମାନଙ୍କ ଦଳରେ ମିଶି ବାହାରକୁ ଯାଉନଥିଲି - ସିଗାରେଟ୍ ଫୁଙ୍କି ନଥିଲି, ବିଅର୍ କି

ଆଉ କଣ ସେମାନେ ପିଅନ୍ତ ସେ ସବୁ ଗ୍ଧଖିନଥିଲ । ଅତ ଲାଇଟ୍ ଏଇଟା, ଟିକେ ଖାଲ ଜଭରେ ଲଗା ଭଳ ଅନୁରୋଧକୁ ଅଳ୍ପ ହସି ଟାଳଦେଇଥିଲ । ଫାଷ୍ଟ ଇୟରରେ ପ୍ରଥମ ଛଅ ମାସ ମୁଁ ସମ୍ପୂର୍ଣ୍ଣ ସ୍କୁଲ ପିଲାଟେ ପର ଥିଲ - ନୀତ ଆଦର୍ଶରେ ପରପୂର୍ଣ୍ଣ କଟକଣାକୁ ସମ୍ମାନ ଦେଉଥିବା ଅମିତ ଦାସ ।

ଧିରେ ଧିରେ ମୋ ମନଟା ବ କେମିତ ଦୋଳାୟିତ ହେବାକୁ ଲାଗିଲା । ଜାଣିଥିଲ ମୁଁ ଉଡ଼ିବା ଉଚତ ନୁହେଁ । କାରଣ ଏ କ୍ଲାସ୍ କଣ୍ଟ୍ରାକ୍ଟର ପୁଅ ବୈଭବ ମୁଁ ନୁହେଁ । ଚଫ୍ ଇଞ୍ଜିନୟରଙ୍କର ମୁଠା ମୁଠା ଟଙ୍କା ମୋ ପାଖରେ ନାହିଁ - ନନ୍ଦନ ତାର ଅଧିକାରୀ । ରୟଲ୍ ଇଷ୍ଟେଟ ମାଲକ ମିଷ୍ଟର ପଟ୍ଟନାୟକ ମୋ ବାପା ନୁହନ୍ତ - ପ୍ରଶାନ୍ତର ଡାଡ଼ି । ସାଧାରଣ କରଣୀ ଗ୍ଧକରୀଟିଏକୁ ଧର ଛଅ ଭଉଣୀ ଗ୍ଧରଝିଅର ବୋଝ ସମ୍ଭାଳୁ ସମ୍ଭାଳୁ ଧଇଁ ସଇଁ ହେଉଥିବା ବାବାଙ୍କ ଏକ ମାତ୍ର ଯୋଗ୍ୟ ପୁତ୍ର ମୁଁ, ବାପା ମାଆଙ୍କ ଆଖିର ସବୁ ସମ୍ଭାବନାକୁ ମୋତେ ସତ କରବାକୁ ହେବ ।

ନା - ତଥାପି ପାରଲନ । ମୋ ଅଜାଣତରେ କେମିତ ଗୋଟାଏ ହୁଗୁଳା ହୋଇଯାଉଥିଲା ବାବାଙ୍କ ଅନୁଶାସନର ଗଣ୍ଠି । ଜୋରରେ କଷି ହୋଇଯାଉଥିଲା, ସାଙ୍ଗ ମାନଙ୍କ ସହ ସମ୍ପର୍କର ଦଉଡ଼ିଟା । ନାଇଁ ନାଇଁ କରୁ କରୁ ଦନେ ସିଗାରେଟଟା ଜୋର କର ଆଣି ମୋ ପାଟିରେ ପୁରେଇ ଦେଲା ନନ୍ଦନ । ପ୍ରଶାନ୍ତ କହଲା, 'ଏଇ ବାବାଜୀ, ଥରେ ଗ୍ଧଖ୍, ନହେଲେ ପସ୍ତେଇବୁ ।' କେମିତ ଗୋଟେ ଗ୍ଧହାଣୀ ଫିଙ୍ଗିଦେଇ ଏମିତ ହସିଦେଲା, ଦବ୍ୟା ଯେ ମୋ ପାଦ ଆଙ୍ଗୁଳଠୁ ମୁଣ୍ଡ ପର୍ଯ୍ୟନ୍ତ ଭିତରେ ଭିତରେ କଣ ଗୋଟାଏ ଦୌଡ଼ିଗଲା । ଆପଲ୍‌ଠୁ ମିଠା - ଫ୍ଲାନେଲ୍ କନାଠୁ ମୁଲାୟମ କଣ୍ଠରେ ସିଏ କହଲା, 'ଗ୍ଧଖନା, କଛ ହେବନ' ।

ସତରେ ମୁଁ କଣ ସଂସାର ତ୍ୟାଗୀ ସନ୍ନ୍ୟାସୀ ? ସେତେବେଳକୁ ଦବ୍ୟା - ବାବା ମା ସମସ୍ତଙ୍କୁ ପଛକୁ ଠେଲ ମୋ ସମ୍ପର୍କର ଧାଡ଼ିର ପ୍ରଥମରେ ଠିଆ ହୋଇ ସାରଥିଲା । ତା ଅନୁରୋଧକୁ କଣ ଏଡ଼ାଇ ଦେଇ ହୁଏ ? ମୁଁ ସିଗାରେଟଟା ପାଟିରେ ଦେଲ, ଥରେ ଦୁଇଥର ତଣ୍ଟିରେ କଛ ହୋଇ କାଶ ଉଠିଲା - ହେଲେ ଖୁବ୍ ଶୀଘ୍ର ସବୁ ଠିକ୍ ହୋଇଗଲା । ରୋଶନୀ ତା ଗୋଲାପ ପାଖୁଡ଼ା ଓଠରେ କହଲା, 'ବ୍ରେଭ୍' । ମୋ ଭିତରେ ଆଉ ଏକ କମ୍ପନ - ସ୍କୁଲ ବେଳେ ଡିବେଟ୍ ଏକ୍ସଟେମ୍ପୋର୍, ପ୍ରୋଜେକ୍ଟ, ଏକ୍‌ଜିବସନ୍,

ଚେସ୍, ବ୍ୟାଡ଼ମିଣ୍ଟନ୍, ସବୁଥିରେ ଫାଷ୍ଟ ହୋଇ ଖୁବ୍ ପ୍ରାଇଜ ପାଇଛି । ହେଲେ ଏମିତ ଦୁଇଟା ଅକ୍ଷରରେ ଏତେ ମଧୁର ଭାବରେ କେହ ବୋଧହୁଏ ମୋତେ କେବେ ପ୍ରଶଂସା କରନଥିଲେ । ଉତ୍ସାହିତ ମୁଁ ରେଶମୀ ଆଡ଼କୁ ଅନେଇ ଅନେଇ ନନ୍ଦନ ହାତରୁ ଗ୍ଲାସଟା ନେଇ ଆସିଲି । ଶୁଭ୍ରା, ନନ୍ଦା, ପ୍ରୀତ ସମସ୍ତଙ୍କ ଆଖିରେ ମୋ ପାଇଁ ପ୍ରଶଂସାର ସୁନାମୀ । ମୁଁ ଗ୍ଲାସରେ ଓଠ ଲଗେଇ ଦୁଇ ଢୋକ ପିଇଦେଲି । ହଃ - ସାମାନ୍ୟ କଡ଼ା ତ - କିନ୍ତୁ ଯେତେ ଭାବୁଥିଲି ସେତେ ନୁହେଁ - ଚଳିବ । ଶୁଭ୍ରା ଫୁସ୍ ଫୁସ୍ ହୋଇ ଦିବ୍ୟା କାନରେ କହିଲା, 'ଜ୍ଞାଓ, ତୋ ରେମିଓ ତ ବେଶ୍ ସ୍ମାର୍ଟ୍ ।' ମୋତେ କିନ୍ତୁ ସବୁ ଶୁଭିଲା । ଦିବ୍ୟା ଗାଲରେ ଲାଜର କୃଷ୍ଣଚୁଡ଼ା, ମୁଁ ଆଉ ଗୋଟେ ଢୋକ ପିଇଦେଲି ।

ମୁଁ ଗୋଟାଏ ଜନିୟସ - ମୋର ପ୍ରଚୁର ଟ୍ୟୁସନ୍ ଏବଂ କୋଚିଂ ଦରକାର । ମୋ ପାଇଁ ସମୟ ଖୁବ୍ ମୂଲ୍ୟବାନ । ଗ୍ଡଲି ଗ୍ଡଲି କି ସାଇକେଲରେ ଗୋଟାଏ ଟ୍ୟୁସନରୁ କୋଚିଂ କ୍ଲାସ୍ ଗଲା ବେଳକୁ ଯେତେକ ସମୟ ନଷ୍ଟ ହଉଛି ସେତକ ମୋ ପାଇଁ କିଏ ଭରଦେବ ? ଏଇ ଧାରଣା ସୃଷ୍ଟି କଲି ବାବାଙ୍କ ମନରେ । ବାଇକ୍‌ଟେ କିଣିଦେବାପାଇଁ ଅନୁରୋଧ କଲି । ଜିଦ୍ ମୁଁ କେବେ କରେନି । ଜାଣିଛି ମୋର ବିନମ୍ର ଅନୁରୋଧ ମୋତେ ଲକ୍ଷ୍ୟ ସ୍ଥଳରେ ଛୁଏଁଇ ପାରିବ । ମୁଁ ଯେ ସେମାନଙ୍କର ସ୍ୱପ୍ନ । ଜିଭ ତଳେ ଗ୍ଡପିଦେଲି ଦିବ୍ୟାର ପ୍ରତିଧ୍ୱନିତ ହେଲାଭଳି ଶବ୍ଦ ଗୁଡ଼ା - 'ପ୍ଲିଜ୍, ବାଇକଟେ ଆଣନା - ପ୍ରମିଶ୍ ତୁମ ସହ ମୁଁ ଡ୍ୟାମ୍ ଯାଏଁ ଯିବ । ଯୁଆଡ଼େ କହିବ, ସେଇଆଡ଼େ ଯିବ ।'

ନାନୀ ବାହାଘରର ଋଣରେ ବାବା ପୋତି ହୋଇପଡ଼ିଥିଲେ । ଆଗକୁ ପୁଣି ତା ପୁଅର ଏକୋଇଶିଆ ଥିଲା । ତା ଗ୍ହାବାଳୀ ଶାଶୁ ସୁନାଚେନ୍ ଆଉ ଖଡୁର ଅର୍ଡର୍ ଦେଇଥିଲା । ସେଥିପାଇଁ ଟଙ୍କା ଏକାଠି କରିବାରେ ବାବା ଝାଳ ପୋଛିବାକୁ ସମୟ ପାଉନଥିଲେ । ସେତିକ ବେଳେ ମୋର ଏ ମାଗୁଣି । କୋଉଟା ବି 'ହଉ ଥା, ପରେ ବୁଝିବା' ଅବସ୍ଥାରେ ନଥିଲା । ବାବା ତତ୍‌କ୍ଷଣାତ୍ ଗାଁକୁ ଗଲେ, ଜମି ବନ୍ଧା ପକେଇ ଟଙ୍କା ଆଣିଲେ । ବଣିଆ ଦୋକାନରେ କିଛି ଦେଇ ନାତିପାଇଁ ସୁନାଚେନ୍ ଆଉ ଖଡୁ ଆସିଲା, ବାକିଟାରେ ବାଇକର ଡାଉନ୍ ପେମେଣ୍ଟ ଗଲା । ମାସକୁ ବାରଶହ ଟଙ୍କା କିସ୍ତି ଭରିବାର ପ୍ରତିଶୃତି ଦେଇ ଗ୍ଡରିବର୍ଷ ପାଇଁ ଅଠଗ୍ଡଳିଶିଟା ଚେକ୍ ଦେଇ ବାବା ମୋର ବାଇକ୍ ଆଣିଦେଲେ । ମା'ର

ସ୍କାନିଂ ହେବାର ଥିଲା, ତା ଶ୍ୱାସ ଔଷଧ ସରଯାଇଥିଲା । ସବୁ ରହିଲା ପର ମାସକୁ ।

ଚକ୍ ମିକ୍ କଳା ରଙ୍ଗର ସେ ବାଇକରେ ଦିବ୍ୟାକୁ ବସେଇ ମୁଁ ଡ୍ୟାମ୍ ଆଡ଼େ ଯାଉଥିଲି । ଭୁଲିନଥିଲି କିନ୍ତୁ ବାବାଙ୍କୁ କରିଥିବା ପ୍ରତିଜ୍ଞା । 'କେବେ ବି ମୁଁ ଜୋରରେ ଗାଡ଼ି ଚଳେଇବିନି ।' ଦିବ୍ୟାର ଓଢ଼ଣୀ ବେଳେ ବେଳେ ଆସି ମୋତେ ଅନ୍ଧ କରିଦେଉଥିଲା । କେତେବେଳେ କେମିତି ତା ଗୁଣ୍ଡି ଗୁଣ୍ଡି କେଶ ମୋ କାନପାଖରେ କଣ ସବୁ କହିଯାଉଥିଲା । ହାଇୱେରେ ଯେତେବେଳେ ସେ ମୋ ଅଣ୍ଟାକୁ ଜାବୁଡ଼ି ଧରିଲା, ଭୟରେ ମୁଁ ବାହ୍ୟଜ୍ଞାନ ହରେଇ ଦେଲି, ଫିସ୍ ଫିସ୍ ହୋଇ ସେ କହିଲା, 'ଟିକେ ଜୋରରେ ଗ୍ଲିନା...' ଧପ୍ କରି ଗୋଟାଏ ମୁହୂର୍ତ୍ତରେ ବାବାଙ୍କ ପାଖରେ କରିଥିବା ପ୍ରତିଜ୍ଞାଟା ମୋ ମନରୁ ଲିଭିଗଲା । ମୁଁ ସ୍ପିଡ୍ ବଢ଼େଇଦେଲି । ସାଏଁ କରି ସାମ୍ନାର ଡମ୍ପରଟାକୁ ପାର କରିଦେଲି । ଓଃ ଓଭରଟେକରେ ଏତେ ମଜାଥାଏ, ଦିବ୍ୟା ହସିଦେଲା । ବୋଧହୁଏ ଖାଲି ହାଲକାଶବ୍ଦଟା ମୋ କାନ ପାଖଦେଇ ଉଡ଼ିଗଲା ।

ମୋ ମିଟରର କଣ୍ଟା ଆହୁରି ବଢ଼ିଲା - ମୁଁ ପୁଣି ଗୋଟାଏ ଟ୍ରକକୁ ଟପିଗଲି । ପୁଣି ଆଉ ଗୋଟିଏ - ଦିବ୍ୟା ମୋ ପିଠିରେ ମୁଣ୍ଡ ଲଦିଦେଇଥିଲା । ନେପୋଲିୟନ୍ ଯେତେବେଳେ ଗୋଟାଏ ପରେ ଗୋଟାଏ ରାଜ୍ୟ ଜୟ କରୁଥିବେ - ସେ କଣ ଯାଠୁ ବେଶୀ ଖୁସି ହେଉଥିବେ ?

ଏଥର ଗୋଟାଏ ବସ୍ - ସାଏଁ କରି ତା ପାଖଦେଇ ଅଦ୍ଭୁତ ଶୈଳୀରେ କାଟିନେଲି - ଇସ୍ କେମିତି ଦେଖିଲିନି ? ସାମ୍ନାରୁ ମାଡ଼ି ଆସୁଥିଲା ମାଲ୍ ଭର୍ତ୍ତି ବଗଟ ଦଶ ଚକିଆ ଟ୍ରକଟା । ଆଉ କିଛି କରିବାର ନଥିଲା । ବିକଟାଳ ଶବ୍ଦ କରି ମୋ ପକ୍ଷୀରାଜ ବାଡ଼େଇ ହୋଇଗଲା ଟ୍ରକରେ । ଖଣ୍ଡେବାଟ ଘୋଷାଡ଼ି ଆଣିଲା । ପଛୁଆ ସେ ଟ୍ରକ୍ - ସେତିକି ଜାଣିଥିଲି । କେଜାଣି ଦିବ୍ୟାର କଣ ହେଲା ... ?

ଯୋଡ଼ା ମହିଳା ମହାବିଦ୍ୟାଳୟ
ବନେଇକଳା, ଯୋଡ଼ା
କେନ୍ଦୁଝର
ଇମେଲ୍ : madhumita.rr@gmail.com

# ପଖାଳ ରାଜନୀତି

ଡା. ସୌମ୍ୟରଞ୍ଜନ ମିଶ୍ର



ଉତ୍କଳ ଦବସରୁ
ଓଡ଼ିଆଙ୍କୁ ଦେବାକୁ ଛତର
କ୍ୟାବନେଟରେ ହୋଇବାରୁ ସ୍ଥିର
ପଖାଳ ଦବସରେ
ସଚବସ୍ତରୀୟ ବୈଠକ ବସିଲା
ପାଞ୍ଚ ଟଙ୍କିଆ ଭତ ଡାଲମାର
ବଭନ୍ନ ଦଗ ଉପରେ
ବହୁତ କଛ ଆଲୋଚନା ହେଲା
କହବା ବାହୁଲ୍ୟ
ଲଞ୍ଚର ମୁଖ୍ୟ ଆଇଟମ୍
ପଖାଳ ହିଁ ଥିଲା ।

ଯେମିତ ଉଦରେ ପଡ଼ିଛ ପଖାଳ
ତା'ସଙ୍ଗେ କୋଠରୀ ବାତ ଅନୁକୂଳ
ଆଖିପତା ପତାକୁ ଛୁଇଁଲା
ଗର୍ଜନ ହେଲା ଟଳମଳ
ସଚବ ଗଣ ଭୁଲଲେ
ସ୍ଥାନ, ପାତ୍ର, କାଳ ।

କନ୍ତୁ ଏହାର ଲାଭ ହେଲା
ମଗଜୁ ବୁଦ୍ଧି ଗଜୁରଲା
ପ୍ରଥମେ ପ୍ରଧାନ ସଚବ
ଆଗତ କରଲେ ପ୍ରସ୍ତାବ
ଭତ ଓ ଡାଲମା ବଦଳେ
ଯଦ ଦେବା ପିଆଜରୁ ଫାଳେ
ତା'ସଙ୍ଗେ କଂସାଏ ପଖାଳ
ଲଙ୍କା ମରଚ ଆଉ ଲେମ୍ବୁଫାଳ
ଆୟୋଡ଼ିନ ଯୁକ୍ତ ଲୁଣ
ଖାଦ୍ୟ ଏ ତ ଅମୃତ ସମାନ ।

ତାଙ୍କର ପ୍ରସ୍ତାବ ଏ ପୁଣି,
କଏ ସେ ପକାଇବ ହାଣି
ମୁଣ୍ଡରେ ମୁଣ୍ଡାଇବ ପାପ
ସିଆର୍ ହୋଇବ ଖରପ
ସଚବ ଗଣ ତେଜ ହୋଇ
ଲୁଗୁଇ ପକାଇଲେ ହାଇ ।

ଯୋଗାଣ ସଚବ ପ୍ରଥମେ କହଲେ
ତାଙ୍କୁ ସଭଏଁ ଅନାଇଲେ
ଓଡ଼ିଆ ସହଜେ ଗରବ
ଡାଲମା ଯଦ ତାଙ୍କୁ ଦେବ
ଖାଦ୍ୟ ଅଟଇ ପୁଷ୍ଟିକର
ହଜମ ହେବନ ତାଙ୍କର
ଦୁଇଟଙ୍କିଆ ଗୁଉଳ ଖାଇ
ଶରୀର ଯାଇଛ ଆଡ଼ଜଷ୍ଟ ହୋଇ ।

ବଭାଗ ରଜା ଅବକାରୀ
ଉଠିଲେ ତା'ର ସେକ୍ରେଟାରୀ
ଗୁଉଳ ସହ ଗୁଉଳଆ ବ
ଅଭ୍ୟାସ ହୋଇଛ
ବାସି ପଖାଳ ଦେଲେ ବ
ହେବ ନାହିଁ କଛ

ଖାଦ୍ୟ ମୋଟେ ହେବ ନାହିଁ ନଷ୍ଟ
ଦାତା ସରକାରଙ୍କ ମନ ବ
ହେବନାହିଁ କଷ୍ଟ ।

ଆଗକୁ ଆସେ ଗ୍ରୀଷ୍ମ କାଳ
ସନ୍ତୁଳ ହୋଇବେ ସକଳ
ପଖାଳେ ମିଶାଇଲେ ପାଣି
ହୋଇବ ସ୍ୱାଦଷ୍ଟ ତୋରାଣୀ
ସେ ତୋରାଣୀ କରପାନ
ତୃପ୍ତ ହୋଇବେ ନଗ୍ର ଜନ
ପଖାଳ ଖାଇ ଆତ୍ମାଶାନ୍ତ
ଅଂଶୁଘାତରୁ ହେବ ମୁକ୍ତି ।

ସ୍ୱାସ୍ଥ୍ୟ ସଚିବଙ୍କ କଥା ଶୁଣି
ଚେୟାରକୁ ଆଗପଛ ଟାଣି
ପର୍ଯ୍ୟଟନ ସଚିତ କହନ୍ତି
ଯୋଜନା ମୁଁ ମନେ ଅଛିଚନ୍ତି
ଆଗକୁ ନବକଳେବର
ଆସିବେ ବଙ୍ଗାଳୀ ହଜାର
ବ୍ୟାନର ଗୋଟେ ଲେଖାଟାଣି
ଲେଖିବା 'ପୁରୀର ତୋରାଣୀ'
ପାଞ୍ଚକୁ ଦଶରେ ବିକିବା
ରାଜକୋଷକୁ ବଢ଼ାଇବା ।

ରାଜକୋଷର ଶୁଣିକଥା
ଅର୍ଥ ସଚିବ ଟେକି ମଥା
ବହୁ ସମୟ ଚିନ୍ତା କରିକି କହିଲେ
ପାଞ୍ଚ ହଜାରରୁ ଅଧିକ ଲୋକ ହେଲେ
ଭାତ ଡାଲମା ସରିଯିବ
ପଛ ଲୋକଙ୍କୁ ନଅଣ୍ଟିବ
କିନ୍ତୁ ପଖାଳ ଯଦି ହେବ
ଖାଲି ତୋରାଣୀ ଦେଇ ହେବ
ତୋରାଣୀ ମୁନ୍ଦେ ମୁନ୍ଦେ ଦେଇ
ସଂଖ୍ୟା ଆମେ ପାରିବା ବଢ଼ାଇ
ସେପାଇଁ ଅଧିକ ଅର୍ଥର ବ୍ୟବସ୍ଥା
ମୋର ଉପରେ ହେଲା ନ୍ୟସ୍ତ
ଆପଣ ମାନେ ଆଦୌ ସେପାଇଁ
ହୁଅନ୍ତୁ ନ ବ୍ୟସ୍ତ ।

ବୈଠକ ସମାପ୍ତ ହୋଇଲା
ହୋଇ ଉଚ୍ଚ 'ଗ୍ୟ' ପାନ
ସଂସ୍କୃତ ସଚିବ ଧନ୍ୟବାଦ
କରିଲେ ଜ୍ଞାପନ
ଭାତ ଓ ଡାଲମା ବଦଳେ
ଯଦି ହୋଇବ ପଖାଳ
ଓଡ଼ିଶା ଶାସକ ରହିବେ
ଭୋଟର ମନେ କାଳ କାଳ
ଓଡ଼ିଶାକୁ ଭଲ ପାଉଛନ୍ତି ବୋଲି
ରହିଯିବ ଟେକ
ଏହି ବଚ୍ଛର ହେଲାବୋଲି
ସଭିଏଁ ଦିଅ ହେ ସନ୍ତକ ।

ମଧଖଣ୍ଡୀ, ଶ୍ରୀ ବଳଦେବ ଜୀଉ
କେନ୍ଦ୍ରାପଡ଼ା, ୭୫୪୨୧୨

# ବାଞ୍ଝ ହେଉ ସେ ଗାନ୍ଧାରୀ

ପ୍ରସନ୍ନ କୁମାର ଦାସ



ଏତକ ମିନତ ଶୁଣ ଜଗତର ନାଥ

ଆଉ ଏ ଜଗତ ପ୍ରଭୁ ନ କର ଦୁଷିତ

ନ ଆସୁ ସୁନାମୀ...

କେଦାର ଘାଟିର ସେହ୍ର ତୁଷାର ସ୍ଖଳନ

ଅନାବୃଷ୍ଟି ବହୁବୃଷ୍ଟି ଭୂମିକମ୍ପମାନ

ମା'କୋଳ ଆଉ କେବେ ହେଁ ନକର ହେ ଶୂନ

ନ କରୁ ମା'ମମତା କରୁଣ କ୍ରନ୍ଦନ ।

ସୀମନ୍ତ ସିନ୍ଦୁରହୀନା ନ ହେଉ ଯୁବତୀ

ବିରହୀ କ୍ରନ୍ଦନେ କେହ୍ର ନ ବିତାଉ ରାତି

ରାକ୍ଷୀର ରେଶମୀ ଡୋର ମହତ୍ତ୍ୱ ସୁମର

ଭାଇ ବିଚ୍ଛେଦେ ଭଗିନୀ ନ ମରୁ ହେ ଝୁରି

ନ ଝୁରୁ ଶୈଶବ... ପିତା ପ୍ରେମ ମା'ର ମମତା

ପୁତ୍ର ଚିତା ନ ଜାଳୁ ହେ ଅନ୍ତ କାଳେ ପିତା ।

ଜଗତେ ଆଉ ନ ହେଉ ରାଜା

ଧୃତରାଷ୍ଟ୍ର ସମ କେହ୍ଵ ଅନ୍ଧ ଅବିବେକୀ

ବାଞ୍ଛ ହେଉ ସେ ଗାନ୍ଧାରୀ...

ନ ଜନମୁ ଶତପୁତ୍ର କୁଳ ବିଧ୍ଵଂସକ

ଦ୍ରୌପଦୀ ଲଜ୍ଜ୍ୟା ହରଣେ

କୁରୁବଂଶ କଲ ହତ ଅର୍ଜୁନ ରୂପରେ

କଆଁ ଆଜ ଲକ୍ଷ ଲକ୍ଷ ଦୁଃଶା

ଜନମିଲେ ଏ ମେଦନୀ ପରେ... ।

ଅଗଣିତା ନିର୍ଭୟାର ଗଣଧରଷଣ

ଜାତ ଧର୍ମ ବିଭଜନ ଗଣ ଆନ୍ଦୋଳନ

ବିଭୀଷିକା ଗଣ ସଂହାରଣ

ଦେଖି ଅସହ୍ୟା ପୃଥିବୀ ହେଲାଣି ଉଛନ୍ନ

ବନ୍ଦ କର ପ୍ରଭୂ...

ନ ହେଉ ଆଜ ହୁଁ ତୁମ ପୃଥ୍ଵୀ ପ୍ରଦୁଷଣ

ଏତକ ହିଁ ମୋ ମିନତ ଶୁଣ...  ।

ଡି-୬୧, ପର୍ଯ୍ୟାବରଣ କମ୍ପ୍ଲେକ୍ସ
ପୋ: ମେହରୌଲୀ
ନୁଆଦିଲ୍ଲୀ, ୧୧୦୦୩୦
ମୋ : ୯୮୧୦୧୫୩୬୨୨

# ଆଳୁ

ମାହେଶ୍ୱରୀ ରଥ



ଆଳୁରେ ଆଳୁ ମୋ ସୁନା ଆଳୁ
ମାଟି ତଳେ ତୁ ଫଳୁ
ଯେମିତ ଥିଲୁ ସେମିତ ଅଛୁ
ମୋ ଜନମ କାଳୁ ।୧ ।

ପିଲାଠୁଁ ବୁଢ଼ା ସଭିଁଙ୍କ ଠାରେ
ଆଦର ତୋର ବେଶୀ,
କିଛି ନ ହେଲେ ଆଳୁ ଭରତା
ପଖାଳ ଦିଏ ପେଶୀ ।୨ ।

ଆଳୁ ଭଜାରେ ଆହା କି ମଜା
ଆଉ କେଉଁଠି ଥିବ
ଆଳୁ ଭଜାକୁ ଗରମ ମୁଢ଼ି
ବରଷା ଦିନ ପାଗ ।୩ ।

ପୁରି ସାଙ୍ଗକୁ ଆଳୁ ଦମ
ଖାଇଛି ଯିଏ ଭାଇ
ଜୀବନ ସାରା ତାହାକୁ କେବେ
ଭୁଲି ସେ ଯିବ ନାହିଁ ।୪ ।

ଦମ ସାଙ୍ଗକୁ ଦହିବରା
ଆହାକି ମଜା ସତେ
ଗରମ ଦିନେ ଗଛ ଛାଇରେ
ଲାଗଇ ଭିଡ଼ କେତେ ।୫ ।

ସିଝା ଓ ପୋଡ଼ା ଭଜା, ଚକଡ଼ା
ଘାଣ୍ଟ ତିଅଣ ପାଇଁ
ସବୁଠି ତୋର ଆଦର ବେଶୀ
କେହି ଭୁଲିବେ ନାହିଁ ।୬ ।

ଶ୍ୱେତସାର ତୋ ଦେହରେ ଭରି
ଜନମି ଅଛୁ ତୁହି
ଦେହକୁ ଦେଉ ବଳ ଓ ଶକ୍ତି
ସଭିଙ୍କ ପାଶେ ଥାଇ ।୭ ।

ଜଗତ ସାରା ଜାଣନ୍ତି ତୋତେ
ସବୁଠି ପରିଚିତ
ଆଳୁ ନଥିଲେ ଖାଇବା ମଜା
ଲାଗେନି ଏହା ସତ ।୮ ।

ଧନ୍ୟରେ ଆଳୁ ଧନ୍ୟ ତୋ ଜନ୍ମ
ସମସ୍ତଙ୍କର ତୁ ପ୍ରିୟ
ଆଳୁ ହୋଇ ତୁ ଜନମି ହେଲେ
ଦୁନିଆକୁ କଲୁ ଜୟ ।୯ ।

ଏହିପରି ତୁ ସାରା ଜନମ
ସାଥିରେ ଥିବୁ ତୁହି
ଭୁଲି ନାଃଇଁ କେ ଭୁଲିବେ ନାହିଁ
ପ୍ରିୟ ସାଥିରେ ତୁହି ।୧୦ ।

ବ୍ରହ୍ମପୁର

# ଏମିତ କାହିଁକି ହୁଏ ?

ପ୍ରଶାନ୍ତ କୁମାର ନାଥ



କିଛି କଥା ମୁହିଁ ପଚ୍ଚାରୁଛି ତୁମକୁ

ପାରିବକୁ ମୋତେ କହି

ଯାହାର ଉତ୍ତର ମୁଁ ଅନେକ ଖୋଜିଛି

ଆଜ ଯାଏଁ ପାଇନାହିଁ ।

ଜାଣି ଜାଣି ଯଦି ଝିଅଟିଏ ଆସି ଗୋ

ପୁଅ ସହ ଧକ୍କା ହୁଏ

ତଥାପି ସେହି ଭୁଲଟି କୁହ ଗୋ କାହିଁ

ପୁଅଟି ଉପରେ ଯାଏ ?

ଝିଅ ଯଦି ପୁଅକୁ କମେଣ୍ଟ ମାରୁଛି

ପୁଅ ତ କରେନି ମନା

ପୁଅ ଯଦି ଖାଲି ଚ୍ହିଁ ଦିଏ ଝିଅକୁ

ଦେଖାଏ ନେଇ ସେ ଥାନା ?

ନାରୀକୁ ସମ୍ମାନ ଦେବା ପୁରୁଷ ଧର୍ମ

ଏକଥା ନୁହଁଇ ମିଛି

ହେଲେ ଭୁଲ ସମସ୍ତଙ୍କ ପାଇଁ ଭୁଲ

ଭାବି କୁହ ଆଗପଛି

ନିୟମ ଯଦି ଖାଲି ସବୁ ନାରୀପାଇଁ

ପୁରୁଷ ହୁଅଇ ହୀନମନା

ବୁଝି ବିଚ୍ଚର କୁହବନ୍ଧୁ, ଇୟେ ନୁହେଁ କି

ପୁରୁଷ ନିର୍ଯ୍ୟାତନା ?

ସୁନ୍ଦରପୁର,
ଉତ୍ତରକୂଳହାଟ, ପ୍ରୀତିପୁର, ଯାଜପୁର
ମୋ : ୦୮୮୯୨୩୦୧୧୪୩

# ସ୍କିଜୋଫ୍ରେନିଆ

ପଙ୍କଜ କୁମାର ପଣ୍ଡା



ଏହା ଗୋଟିଏ ଗମ୍ଭୀର ମାନସିକ ରୋଗ, ଯାହା କି ପୃଥିବୀସାରା ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଏକ ବଡ଼ ସମସ୍ୟା ଅଟେ । ପ୍ରତ୍ୟେକ ଦେଶର ପ୍ରାୟ ଏକ ପ୍ରତିଶତ ଜନସଂଖ୍ୟା ଏହି ରୋଗରେ ପୀଡ଼ିତ । 'ସ୍କିଜୋଫ୍ରେନିଆ' ଶବ୍ଦ ବିଭାଜନ / ସ୍ପ୍ଲିଟ୍ / SPLIT ର ପରିକଳ୍ପନାରୁ ଉତ୍ପନ୍ନ ହୋଇଅଛି । ଏହି ରୋଗରେ ପୀଡ଼ିତ ରୋଗୀମାନଙ୍କର ନିଜର ବାସ୍ତବିକ ଜୀବନଶୈଳୀ ପ୍ରତିପାଦନ କରିବାରେ କ୍ଷମତା ହ୍ରାସ ପାଇଥାଏ ।

## ସ୍କିଜୋଫ୍ରେନିଆ ରୋଗର ଲକ୍ଷଣ

୧. କୌଣସି କାରଣ ନଥାଏ ରୋଗୀ ଉଚ୍ଚସ୍ୱରରେ କଥାବାର୍ତ୍ତା କରିଥାଏ । କଥା ହେବା ସମୟରେ ପ୍ରାୟତଃ ଗୋଟିଏ ବିଷୟରୁ ଅନ୍ୟ ଏକ ଅଣସମ୍ବନ୍ଧୀୟ ବିଷୟ ଉପରେ ଚର୍ଚ୍ଚା କରିଥାଏ ।

୨. ପୋଷାକ ପରିଧାନ ନ କରି ବୁଲିବା, ନିଜ ପୋଷାକକୁ ଚିରିଦେବା ଏବଂ ଏହିପରି ଅନ୍ୟ ପ୍ରକାରର କାର୍ଯ୍ୟମାନ କରିଥାଏ । ଯାହାକି ସମାଜପାଇଁ ଗ୍ରହଣଯୋଗ୍ୟ ହୋଇନଥାଏ ।

୩. ଗୋଟିଏ ସ୍ଥାନରେ ଘଣ୍ଟା ଘଣ୍ଟା ଧରି ବସି ରହିଥାଏ । ଏପରିକି ଗୋଟିଏ ଗୋଟିଏ ଦିନ ଏକ ସ୍ଥାନରେ ବସି ରହିଥାଏ ।

୪. ଗାଧୋଇବା ବନ୍ଦ କରିଦେବା ଏବଂ ଅସ୍ତବ୍ୟସ୍ତ ଓ ଅପରିଷ୍କାର ଦେଖାଦେବା ।

୫. ଏକୁଟିଆ ଥିବା ବେଳେ କୌଣସି ସ୍ୱର ଶୁଣାଇଦେବା ଏବଂ ନିଜ ବିଷୟରେ ଅନ୍ୟ କେହି କଥାବାର୍ତ୍ତା କରୁଥିବାର ଶବ୍ଦ ଶୁଣାଇଦେବା ।

୬. କୌଣସି କାରଣ ନଥାଇ ନିଜେ ନିଜେ ହସିବା, କଥା ହେବା ଏବଂ କାଳ୍ପନିକ ବ୍ୟକ୍ତିବିଶେଷ ଓ ଶବ୍ଦ ସହ କଥାବାର୍ତ୍ତା କରିବା ।

୭. ନିଜର ସାଙ୍ଗସାଥୀ, ସମ୍ପର୍କୀୟ ଏବଂ ପଡ଼ୋଶୀଙ୍କ ଉପରେ ସନ୍ଦେହ କରିବା । ରୋଗୀ ଅନୁଭବ କରେ କି ଲୋକମାନେ ତା'ର ବିରୁଦ୍ଧରେ ଅଛନ୍ତି ଏବଂ ତା'ସହିତ ଶତ୍ରୁତା କରୁଛନ୍ତି ।

୮. ରୋଗୀ ଅନୁଭବ କରେ ଯେ T.V., Radio ଓ Videoରେ ପ୍ରସ୍ତୁତ କାର୍ଯ୍ୟକ୍ରମ ଓ ଲୋକମାନଙ୍କର

ବ୍ୟବହାର, ତା'ବିଷୟରେ ହିଁ ଚର୍ଚ୍ଚା କରୁଛନ୍ତି ।
୯. ପୀଡ଼ିତ ବ୍ୟକ୍ତି ଅନୁଭବ କରେ ଯେ, ତା'ଉପରେ କେହି ଗୁଣୀଗାରେଡ଼ି ଓ ଯାଦୁଟୋନା କରିଛନ୍ତି ।
୧୦. ରୋଗୀ ଏହା ଅନୁଭବ କରେ ଯେ, ସେ ୧୦୦% ଠିକ ଅଛି ଏବଂ କୁହେ ଯେ ସେ କୌଣସି ମାନସିକ ରୋଗରେ ପୀଡ଼ିତ ନୁହେଁ ।

ଯେ କୌଣସି ବ୍ୟକ୍ତି ସ୍କିଜୋଫ୍ରେନିଆରେ ଆକ୍ରାନ୍ତ ହୋଇପାରନ୍ତି । ଯୁବକ, ବୃଦ୍ଧ, ଧନୀ, ଗରୀବ, ସହରୀ ଏବଂ ଗାଉଁଲି, ଡାକ୍ତର, ଏକାଉଣ୍ଟାଣ୍ଟ ଏବଂ ଓକିଲ, ଯେ କେହି ବି ଏହି ରୋଗରେ ଆକ୍ରାନ୍ତ ହୋଇପାରନ୍ତି । ସେ ଯାହା ବି ହେଉ, 'ସ୍କିଜୋଫ୍ରେନିଆ'ରୋଗ ସାଧାରଣତଃ ୧୮ରୁ ୩୦ ବର୍ଷ ବୟସ ମଧ୍ୟରେ ଆରମ୍ଭ ହୋଇଥାଏ ।

## ସାଧାରଣ କାରଣ : -

୧. ମସ୍ତିଷ୍କରେ ଥିବା ରସାୟନର ପ୍ରକ୍ରିୟା ଯୋଗୁଁ ମଣିଷର ଚିନ୍ତା, ବ୍ୟବହାର ଓ ଭାବନା ଠିକ ଭାବରେ ପ୍ରତିପାଦିତ ହୋଇଥାଏ । ଏହି ରସାୟନ ଅସାମଞ୍ଜସ୍ୟତା ଯୋଗୁଁ ବ୍ୟକ୍ତିର ଚିନ୍ତା ଓ ମନୋଦଶାରେ ପରିବର୍ତ୍ତନ ଆସିଥାଏ ।
୨. ଅତ୍ୟଧିକ ମାନସିକ ଉତ୍ତେଜନା ସୃଷ୍ଟି କରୁଥିବା ଘଟଣା ଗୁଡ଼ିକ ଯେପରିକି, ପରିବାରରେ କାହାର ପ୍ରିୟଜନ ମୃତ୍ୟୁ, ପରୀକ୍ଷାରେ ଅସଫଳ ହୋଇଯିବା, ବହୁତ ଆର୍ଥିକ କ୍ଷତି, ଚାକିରୀରୁ ବହିଷ୍କାର, ଗର୍ଭବତୀ ହେବା ଓ ଛାଡ଼ପତ୍ର ଦେବା । ଏହା ଜରୁରୀ ନୁହେଁ କି ଅତ୍ୟଧିକ ମାନସିକ ଉତ୍ତେଜନା ସୃଷ୍ଟି କରୁଥିବା ଘଟଣାଦ୍ୱାରା ଏହି ରୋଗ ଉତ୍ପନ୍ନ ହୋଇଥାଏ ।
୩. ଯଦି ମାଆ ଓ ବାପା ମଧ୍ୟରୁ କୌଣସି ଜଣକୁ ଏହି ରୋଗ ହୋଇଥାଏ, ତେବେ ତାଙ୍କର ସନ୍ତାନ ମାନଙ୍କୁ ଏହି ରୋଗ ଆକ୍ରାନ୍ତ କରିବାର ମାତ୍ରା ୪ ରୁ ୬ ପ୍ରତିଶତ ହେବାର ସମ୍ଭାବନା ଥାଏ । କିନ୍ତୁ ଏହା ଜରୁରୀ ନୁହେଁ ଯେ, ତାଙ୍କ ପରିବାରର ଅନ୍ୟ କୌଣସି ସଦସ୍ୟଙ୍କୁ 'ସ୍କିଜୋଫ୍ରେନିଆ' ହୋଇଥିବ ।

## ଉପଚାର : -

'ସ୍କିଜୋଫ୍ରେନିଆ' ରୋଗର ଚିକିତ୍ସା ପାଇଁ ଅତ୍ୟାଧୁନିକ ଔଷଧ ଉପଲବ୍ଧ ହେଲାଣି, ଯେଉଁ ଗୁଡ଼ିକ ମନୋଚିକିତ୍ସକଙ୍କର ତତ୍ତ୍ୱାବଧାନରେ ନେବା ଜରୁରୀ ଅଟେ । ଯଦି ଲକ୍ଷଣ କମ କିମ୍ବା ବନ୍ଦ ହେବାପରେ ଚିକିତ୍ସା ବନ୍ଦ କରି ଦିଆଯାଏ, ତେବେ ରୋଗର ପୁନରାବୃତ୍ତି ହୋଇଥାଏ । ତେଣୁ ଯଦି ନିୟମିତ ଭାବେ

ଏକବର୍ଷ ପାଇଁ ଚିକିତ୍ସା କରାଯାଏ, ତେବେ ରୋଗର ପୁନରାବୃତ୍ତି ହୋଇନଥାଏ ।

## ସାଧାରଣତଃ ପଚରାଯାଉଥିବା ପ୍ରଶ୍ନମାନ : -

ପ୍ରଶ୍ନ : 'ସ୍କିଜୋଫ୍ରେନିଆ' କଣ ଭୂତ, ପ୍ରେତ, ତାନ୍ତ୍ରିକ ବିଦ୍ୟାଦ୍ୱାରା ହୋଇଥାଏ କି ?

ଉତ୍ତର : ନିଶ୍ଚିତ ଭାବେ ନୁହେଁ ।

ପ୍ରଶ୍ନ : ବିବାହ ପୂର୍ବରୁ ନିଜ ଜୀବନସାଥୀକୁ ଏହି ରୋଗ ବିଷୟରେ ଜଣାଇବା ଆବଶ୍ୟକ କି ?

ଉତ୍ତର : ନିଶ୍ଚିତ ଭାବରେ ଜଣାଇବା ଆବଶ୍ୟକ । କାରଣ ଔଷଧର ଆବଶ୍ୟକତା ବିବାହର ପରବର୍ତ୍ତୀ ସମୟରେ ମଧ୍ୟ ହୋଇଥାଏ । ଯଦି ଜୀବନସାଥୀକୁ ଏହା ଜଣାଥାଏ, ତା ହେଲେ ଚିକିତ୍ସାରେ ସାହାଯ୍ୟ ମିଳିଥାଏ । ଦ୍ୱିତୀୟତଃ ଯଦି ରୋଗହୁଏ ଓ ସତ୍ୟତା ଜଣାପଡ଼ିଯାଏ, ତା'ହେଲେ ବୈବାହିକ ଜୀବନରେ ତ୍ରୁଟି ଦେଖାଯାଏ ।

ପ୍ରଶ୍ନ : 'ସ୍କିଜୋଫ୍ରେନିଆ' ରୋଗୀ ଆତ୍ମହତ୍ୟା କରିଥାନ୍ତି କି ?

ଉତ୍ତର : ନିଶ୍ଚିତ ଭାବରେ ହଁ । ୪୦% ରୋଗୀମାନଙ୍କର ମଧ୍ୟରେ ଆତ୍ମହତ୍ୟା କରିବାର ସମ୍ଭାବନା ଥାଏ । ଯଦି କୌଣସି ବ୍ୟକ୍ତି ଆତ୍ମହତ୍ୟା କରିବାକୁ ଚେଷ୍ଟା କରି ବଞ୍ଚିଯାଇଥାଏ, ତେବେ ସେ @ସ୍କିଜୋଫ୍ରେନିଆ'ରେ ପୀଡ଼ିତ କି ନୁହେଁ, ତାହା ପରୀକ୍ଷା କରାଯିବା ଉଚିତ ।

ପ୍ରଶ୍ନ : କେଉଁ ନିକଟତମ ଚିକିତ୍ସାଳୟରେ ରୋଗର ଚିକିତ୍ସା ସୁବିଧା ଅଛି ?

ଉତ୍ତର : ପ୍ରାୟ ସବୁ ବଡ଼ ସହରର ସରକାରୀ ଚିକିତ୍ସାଳୟ ମାନଙ୍କରେ ମାନସିକ ରୋଗ ଚିକିତ୍ସା ପାଇଁ ସୁବିଧା ଅଛି ।

## 'ସ୍କିଜୋଫ୍ରେନିଆ'ର ଉପଚାର ଅଛି କି ?

'ସ୍କିଜୋଫ୍ରେନିଆ' ସେମିତି ଏକ ଘାତକ ବେମାରୀ ନୁହେଁ, ଯେପରିକି ପୂର୍ବରୁ ଲୋକମାନେ ଭାବୁଥିଲେ । ବର୍ତ୍ତମାନ ଆଧୁନିକ ଚିକିତ୍ସା ଦ୍ୱାରା 'ସ୍କିଜୋଫ୍ରେନିଆ' ରୋଗୀ ନିଶ୍ଚିତ ରୂପରେ ଏକ ଉତ୍ତମ ଜୀବନ-ଯାପନ କରିପାରିବ ।

ସାଇକିଆଟ୍ରିକ୍ ସୋସିଆଲ୍ ୱାର୍କର
ଗିରିସାହି (ଦୁର୍ଗାମଣ୍ଡପ ପାଖ), ଭଦ୍ରକ
ଓଡ଼ିଶା, ୭୫୬୧୦୦
ଇ-ମେଲ୍ : pankajpsw@gmail.com
ମୋବାଇଲ୍ : 07735188806, 08514087748

# ସମ୍ପତ୍ତି

ଶ୍ରୀମତ ସରତା ପଣ୍ଡା



ଜୀବନଯାକ ଅକ୍ଲାନ୍ତ ପରିଶ୍ରମ କରି ମନୁଷ୍ୟ ଉପାର୍ଜନ କରେ ପ୍ରବଳ ଧନ ସମ୍ପତ୍ତି । ସମାଜରେ ନିଜର ପ୍ରାଧାନ୍ୟ ବିସ୍ତାର କରିବା ଏବଂ ଆଗାମୀ ପୀଢ଼ିପାଇଁ ସମସ୍ତ ସୁଖସୁବିଧାର ଆୟୋଜନ କରିବା ଉଦ୍ଦେଶ୍ୟରେ ମନୁଷ୍ୟ ଉପାର୍ଜନ କରେ ସମ୍ପତ୍ତି । ଏଥିପାଇଁ ତାକୁ ଯେତେପ୍ରକାର ଖରାପ କାମ କରିବାକୁ ହେଉ ଅବା ଯେତେ କୁପଥ ଅବଲମ୍ବନ କରିବାକୁ ହେଉ ପଛେ ସେ କେବେ ଏଥିରୁ ପଛଘୁଞ୍ଚା ଦିଏନି । ଆଜି ଏତିକ ମିଳିଲା ତ କାଲି ୟା'ଠୁ ଅଧିକ ଓ ପରେ ପରେ ଅଧିକରୁ ଅଧିକ । ଲୋଭର ସୀମା ନାହିଁ । କହନ୍ତି ଅର୍ଥ ହିଁ ଅନର୍ଥର କାରଣ । କିନ୍ତୁ ଆଗାମୀ ମନୁଷ୍ୟ ଏହି ସମ୍ପତ୍ତିର ପ୍ରକୃତ ସଂଜ୍ଞା କିଣ ବୁଝିପାରିନାହିଁ । କିନ୍ତୁ ସମସ୍ତେ ନୁହନ୍ତି, କିଛି ଜ୍ଞାନୀଲୋକ ସତ୍ ଉପାୟରେ ସମ୍ପତ୍ତି ଉପାର୍ଜନ କରନ୍ତି ଏବଂ ନିଜର ରୁଟି, କପଡ଼ା ଓ ମକାନର ବନ୍ଦୋବସ୍ତ କରି ଅବଶିଷ୍ଟ ଧନ ଦୁଃଖୀ, ଦଳିତ, ଦେଶସେବା ଓ ପରୋପକାରରେ ଲଗାନ୍ତି ଏବଂ ସେମାନେ ହିଁ ଏହାଦ୍ୱାରା ଯଥେଷ୍ଟ ପୂଣ୍ୟ ଅର୍ଜନ କରନ୍ତି ଏବଂ ଈଶ୍ୱରଙ୍କ ନିକଟବର୍ତ୍ତୀ ହୁଅନ୍ତି । ପ୍ରତ୍ୟେକ ମନୁଷ୍ୟ ଜାଣେ ଯେ ସେ ଏହି ସଂସାରକୁ ଆସିଛି ଏକା ଏବଂ ଯିବ ମଧ୍ୟ ଏକା ଏକା । ନା ସେ କିଛି ନେଇ ଆସିଛି ସାଥିରେ ନା କିଛି ନେଇକି ଯିବ । ହଁ ସେ କେବଳ ନେଇକରି ଯିବ ନିଜର କର୍ମ-ଦୁଷ୍କର୍ମ ଅଥବା ପୂଣ୍ୟ । ପୂଣ୍ୟବାନ ଲୋକମାନେ ନିଜର ସୁକର୍ମ ଦ୍ୱାରା ମୁକ୍ତି ପାଇଥାନ୍ତି ଏବଂ ପୂନର୍ଜନ୍ମ ନେଇଥାନ୍ତି । ସେମାନେ ସାଧୁସନ୍ଥ କିମ୍ବା କୌଣସି ବିଶିଷ୍ଟ କଳାନେଇ ପୁଣିଥରେ ଏହି ସଂସାରକୁ ଆସିଥାନ୍ତି । କିନ୍ତୁ ଯେଉଁମାନେ ଜୀବନରେ ଅନେକ ଦୁଷ୍କର୍ମ କରନ୍ତି, ସେମାନେ କେବଳ ମାୟା ପଛରେ ଧାଆନ୍ତି । ଏହି ସଂସାର ହେଉଛି ମିଛ ଓ ମାୟାର ସଂସାର । ମାୟାଜାଲ ଏମାନଙ୍କୁ ଏମିତ ବାନ୍ଧି ରଖିଥାଏ ଯେ ସଂସାରରେ

କଣ ସତ୍ୟ ଓ କଣ ମିଥ୍ୟା, ଏହା ସେମାନଙ୍କର ଦୃଷ୍ଟିଗୋଚର ହୁଏନାହିଁ । ଯାହାଦ୍ୱାରା କି ସେମାନେ ପରଜନ୍ମରେ ପଶୁପକ୍ଷୀ ଯୋନି, କୀଟପତଙ୍ଗ ଯୋନି କିମ୍ବା ଅସହାୟ ମନୁଷ୍ୟ ଯୋନିରେ ଜନ୍ମ ନିଅନ୍ତି, ଯେଉଁଥିରେ ସେମାନେ ଅନେକ କଷ୍ଟ ପାଆନ୍ତି । ଏହି ଜନ୍ମରେ ଯେତେ ଭଲ କର୍ମ କଲେ ମଧ୍ୟ ତାଙ୍କର ପାପ କ୍ଷୟ ହୁଏ ନାହିଁ । ପୂର୍ବଜନ୍ମରେ କରିଥିବା ପାପର ଫଳ ହିଁ କେତେକାଂଶଙ୍କୁ ଏଇ ଜନ୍ମରେ ଭୋଗ କରିବାକୁ ପଡ଼ିଥାଏ । ତେଣୁ ଏଠି ପ୍ରଶ୍ନ ଉଠେ, ମନୁଷ୍ୟର ପ୍ରକୃତ ସମ୍ପତ୍ତି କଣ ? ଆପଣ ମାନଙ୍କର ଏହି ପ୍ରଶ୍ନର ସଠିକ ଉତ୍ତର ଦେବାର ଉଦ୍ୟମରେ ଆମର ଏହି କାହାଣୀ 'ସମ୍ପତ୍ତି' ।

କାହାଣୀର ଦୁଇପାର୍ଶ୍ୱରେ ଭୁବନେଶ୍ୱରରେ ବସବାସ କରୁଥିବା ଦୁଇଟି ପରିବାର । ଗୋଟିଏ ପଟେ ଖାଦ୍ୟ, ଯୋଗାଣ ଓ ଉନ୍ନୟନ କମିଶନର ରାକେଶ ପଣ୍ଡା, ପତ୍ନୀ ଶ୍ରୀମତି ଶ୍ରଦ୍ଧାଞ୍ଜଳୀ ପଣ୍ଡା ଏବଂ ୨୦ ବର୍ଷର ଏକମାତ୍ର କନ୍ୟା ଗାୟତ୍ରୀ । ଅନ୍ୟପାର୍ଶ୍ୱରେ ଅବସରପ୍ରାପ୍ତ ସରକାରୀ କିରାଣୀ ରାଜକିଶୋର ମହାପାତ୍ର, ସ୍ତ୍ରୀ ବାସନ୍ତୀ ଦେବୀ, ବଡ଼ପୁଅ ଅମିତେନ୍ଦ୍ର, ବଡ଼ଝିଅ ଲଳିତା, ସାନ ପୁଅ ଅବିନାଶ, ଅତି ଅଲିଅଳି ସାନଝିଅ ନନ୍ଦିନୀ ଏବଂ ଅତ୍ୟନ୍ତ ବୃଦ୍ଧା, ୮୨ ବର୍ଷିୟା ବିଧବା ମା ସରସ୍ୱତୀ ଦେବୀ । ରାକେଶଙ୍କ ପତ୍ନୀ ଶ୍ରଦ୍ଧାଞ୍ଜଳୀ ହେଉଛନ୍ତି ଜଣେ ସମ୍ଭ୍ରାନ୍ତ ଆଧୁନିକା ମହିଳା । ନିଜର ହାଇ ଫାଇ ଲାଇଫ୍ ଷ୍ଟାଟସ୍ ମେଣ୍ଟେନ୍ କରିବାପାଇଁ ସବୁବେଳେ ସ୍ୱାମୀଙ୍କ ପାଖରେ ଦାବୀ, କେତେବେଳେ ଦାମୀ ଦାମୀ ଗହଣା ତ କେତେବେଳେ ଦାମୀ ଶାଢ଼ୀ ଏବଂ କେତେବେଳେ ସାଙ୍ଗସାଥୀଙ୍କୁ ନେଇ ଦାମୀ ତାରକା ହୋଟେଲରେ ପାର୍ଟି, ବିଭିନ୍ନ ପ୍ରକାର ଆଧୁନିକ ଜିନିଷ ଉପକରଣ କ୍ରୟ କରିବା ଇତ୍ୟାଦି ଇତ୍ୟାଦି । ଏହି ସବୁ ଜିନିଷ ପାଇଁ ଦରକାର ମୋଟା ଅଙ୍କର ଅର୍ଥ । ସେଇଥିରେ ସ୍ୱାମୀ ତୁରନ୍ତ ରାଜି ହୋଇଗଲେ ତ ବହୁତ ଭଲ, ନ ହେଲେ ଘରେ ଚାଲେ ଘନ ଘନ କଳିକଜିଆ । ସ୍ତ୍ରୀଙ୍କର ସମସ୍ତ ଦାବୀ ତୁଲାଇବାକୁ ଯାଇ କଳାଧନ ଉପାର୍ଜନର ଆଶ୍ରୟ ନିଅନ୍ତି ରାକେଶ ବାବୁ । ଦିନଯାକର ଅକ୍ଳାନ୍ତ ପରିଶ୍ରମରେ ଘରକୁ ମଧ୍ୟାହ୍ନଭୋଜନ ପାଇଁ ବି ସମୟ ମିଳେନି । ଅଫିସିଆଲ୍ ପାର୍ଟିରେ ମଦିରା ସାଙ୍ଗରେ ଲଞ୍ଚ୍ କରିବାରେ ସେ ନିପୁଣ । ଆଇଏଏସ୍ ଅଫିସର ରାକେଶ ବାବୁ ତାଙ୍କ ଥାଟ ଯେମିତି ଶ୍ରଦ୍ଧାଞ୍ଜଳୀଙ୍କ ଥାଟ୍ ବି ସେମିତି ।

ସକାଳ ନ'ଟାରେ ପଣ୍ଡା ପରିବାର ଶଯ୍ୟାତ୍ୟାଗ କରନ୍ତି । ସଙ୍ଗେ ସଙ୍ଗେ ନିତ୍ୟକର୍ମ ସାରିଦେଇ ଚାହା ବିସ୍କୁଟ୍ ଖାଇ ଘରୁ ବାହାରି ଯାଆନ୍ତି ରାକେଶ । ତା'ପରେ ଶ୍ରଦ୍ଧାଞ୍ଜଳୀ । ଘରେ ଏକା ରହିଯାଏ

ଗାୟତ୍ରୀ । ଗ୍ରାଜୁଏସନ୍ ସରିବାପରେ ଡିଷ୍ଟାନ୍ସ୍ ଏଜୁକେସନରେ ଏମବିଏ କରୁଛି ସେ । କଲେଜ ଯିବାର ଆବଶ୍ୟକତା ନଥାଏ, ତେଣୁ ସେ ବି ନିଜ ବନ୍ଧୁମାନଙ୍କ ସହ ଘୁରିବୁଲେ ସହରର ଦାମୀ ମଲ୍, ସିନେମା ହଲ୍ ଓ ବଜାର ମାନଙ୍କରେ । ବାପା ମାଆଙ୍କ ପ୍ରତ୍ୟେକ କଳର ମଝିରେ ମୁକସାକ୍ଷୀ ହେଉଛି ଗାୟତ୍ରୀ । ଏମିତିରେ ବିତିଛି ତା ଶୈଶବ ଓ କିଶୋରୀ ଅବସ୍ଥା । ବର୍ତ୍ତମାନ ସେ ଯୌବନର ପାଦଦେଶରେ ଉପନିତ ।

ଅପରପାର୍ଶ୍ୱରେ ଭୁବନେଶ୍ୱରରେ ଥିବା ରଜକିଶୋର ମହାପାତ୍ର ବାବୁଙ୍କ ପରିବାର । ବଡ଼ପୁଅ ଅମିତେନ୍ଦ୍ର ବାଙ୍ଗାଲୋରରେ ଏକ ବ୍ୟାଙ୍କରେ ଚାକିରୀ କରେ, ପତ୍ନୀ ନିଳିମାଙ୍କ ସହ ଓ ଗୋଟିଏ ଚାରିବର୍ଷିଆ ପୁଅ ଅଛି । ବଡ଼ଝିଅ ଲିଳତାର ବାହାଘର ପରେ ୭ ବର୍ଷର ଗୋଟିଏ ପୁଅ ବିକ୍ରମ ଅଛି । ସାନପୁଅ ଅବିନାଶ ଭଲ ଛାତ୍ର । ଅତ୍ୟନ୍ତ ଭଦ୍ର, ସୁସଂସ୍କାରୀ ଏବଂ କୋମଳ ସ୍ୱଭାବର । କିନ୍ତୁ ଦୁର୍ଭାଗ୍ୟବଶତଃ ପିତାଙ୍କ ଗରିବି ହେତୁ ସେ କୌଣସି ଭଲ କଲେଜରେ ଇଞ୍ଜିନିୟରିଂ ସିଟ୍‌ଟିଏ ପାଇଲେନି । ରଜକିଶୋର ବାବୁ ଅବସର ଗ୍ରହଣ ପରେ ଯାହା ଧନରାଶି ପାଇଥିଲେ ସେଥିରେ ସେ ସାନଝିଅ ନନ୍ଦିନୀର ବିବାହ କରାଇ ଦେଇଥିଲେ । ବର୍ତ୍ତମାନ ତାଙ୍କର ସମ୍ବଳ ମାନେ ଗୋଟିଏ ଘର ଖଣ୍ଡିଆ ଏବଂ ମାସିକ ପେନ୍‌ସନ । ଘର ଚଳାଇବାକୁ ଯଥେଷ୍ଟ ନୋହିଥିଲେ ସୁଦ୍ଧା ପତ୍ନୀ ବାସନ୍ତୀ ଦେବୀ ସବୁ ସୁରୁଖୁରୁରେ ଚଳାଇ ନିଅନ୍ତି । ଅବିନାଶ ଗୋଟିଏ କୁରିଅର୍ କମ୍ପାନୀରେ କାମ କରେ । ସେ ଯାହା କିଛି ଟଙ୍କା ଘରକୁ ଦିଏ ତାହା ଭବିଷ୍ୟତ ପାଇଁ ସଞ୍ଚୟ କରନ୍ତି ବାସନ୍ତୀ ଦେବୀ ।

ଅବିନାଶ ଭାରି କର୍ମିଷ୍ଠ ଏବଂ ନିଷ୍ଠାପର କର୍ମଚାରୀ । କମ୍ପାନୀର ମାଲିକ ଅଗ୍ରୱାଲ୍ ବାବୁ ବହୁତ ଭଲ ପାଆନ୍ତି ଅବିନାଶକୁ । ସେଇଥିପାଇଁ କମ୍ପାନୀର ସମସ୍ତ ଦାୟିତ୍ୱ ତାକୁ ଦେଇ ନିଜେ ଅନ୍ୟ ଆଡ଼େ ବ୍ୟସ୍ତ ରହନ୍ତି । ଦିନେ ଗାୟତ୍ରୀ ନିଜ କରେସ୍ପଣ୍ଡେନ୍ସ୍ କୋର୍ସର ଆନ୍‌ସର୍ ସିଟ୍ କୁରିଅର୍ କରିବାକୁ ଆସେ, ହେଲେ ବହୁତ ଭିଡ଼ ଦେଖି ଚିନ୍ତାରେ ପଡ଼ିଯାଏ । ସାଥିରେ ଥିବା ସାଙ୍ଗମାନେ ସିନେମା ଯିବାପାଇଁ ତରତର ହେଉଥିବା ବେଳେ ଏଇ ପ୍ୟାକେଟ୍ ନ ପଠାଇଲେ ଅସୁବିଧା ହେବ, ଜାଣି ଗାୟତ୍ରୀ ଅଫିସରଙ୍କୁ ନିବେଦନ କରେ ଶୀଘ୍ର କରିବା ପାଇଁ, ହେଲେ ସେ କହନ୍ତି, ଯେ ଧାଡ଼ିରେ ଆସନ୍ତୁ । ସେଠାରୁ ଉତ୍ୟକ୍ତ ଗାୟତ୍ରୀ କମ୍ପାନୀ ମେନେଜରଙ୍କୁ ଭେଟିବାପାଇଁ ଜିଦ୍ କରେ । ଅଗ୍ରୱାଲ ବାବୁଙ୍କ

ଅନୁପସ୍ଥିତରେ ତାଙ୍କ ସିଟରେ ବସିଥିବା ଅବିନାଶକୁ ମେନେଜର ଭାବି ଗାୟତ୍ରୀ ନିଜ ପରିଚୟ ଦେଇ କହେ ସେ ବହୁତ ଜଲଦିରେ ଅଛି । ଗାୟତ୍ରୀ ଠାରୁ ପ୍ୟାକେଟ୍ ନେଇ ପିଉନ୍ ଦ୍ୱାରା ପଠାଇବା ପରେ ଗାୟତ୍ରୀ ଧନ୍ୟବାଦ କହି ଚାଲିଯାଏ । ସେ ଯିବା ବାଟକୁ ଚାହିଁ ରହିଥାଏ ଅବିନାଶ । ପ୍ରଥମଥର କେଉଁ ଜଣେ ଝିଅ ଅବିନାଶକୁ ଆକର୍ଷିତ କରିଛି ।

ପ୍ରତି ମାସରେ ନିଜ କୋର୍ସ୍ ମାଟେରିଆଲ୍ ପଠାଇବା ପାଇଁ ଗାୟତ୍ରୀ ଆସେ ଏବଂ ସିଧା ମ୍ୟାନେଜରଙ୍କ ଚାମ୍ବରରେ ପଶିଯାଏ । ଆଉ ଅବିନାଶ ତା'କାମ ଶୀଘ୍ର କରିଦିଏ । ଏମିତି ମିଳାମିଶା ପରେ ଅବିନାଶ ଭଲପାଇ ବସେ ଗାୟତ୍ରୀକୁ । ଅବଶ୍ୟ ମନରେ ଦ୍ୱିଧାଥାଏ ଯେ, ଆଇଏଏସ୍ ଅଫିସରଙ୍କ ଝିଅ, ମାନେ କେତେ ଅଲଅଳରେ ବଢ଼ିଥିବ, ସେ କଣ ଗରିବ ପରିବାରର ବୋହୁ ହେବାକୁ ରାଜି ହେବ ? ହେଲେ କିଏ ଜାଣେ ଯଦି ଭାଗ୍ୟ ବଦଳିବ, ହୁଏତ କାଲି ଅବିନାଶ ଉଚ୍ଚପଦସ୍ଥ ଅଧିକାରୀ ହୋଇପାରେ, ସେତେବେଳେ ସେ ନିଶ୍ଚୟ ଗାୟତ୍ରୀକୁ ବିବାହ କରିବ ।

ଦିନକର ଘଟଣା ସବୁମାସ ପରି ଗାୟତ୍ରୀ ନିଜ କୋର୍ସ୍ ମାଟେରିଆଲ୍ ପଠାଇବା ପାଇଁ ଆସେ, ଏହି ସମୟରେ ଅବିନାଶ ସହ ତା ଚାମ୍ବରରେ ଥାଆନ୍ତି, ଅବିନାଶର ବନ୍ଧୁ ସିଦ୍ଧାନ୍ତ । ଗାୟତ୍ରୀର ପ୍ୟାକେଟ୍ ନେଇ ସାଙ୍ଗେ ସାଙ୍ଗେ କାମ କରିଦେଇ ମନିରସିପ୍ଟ ଦେଇଦିଏ ଅବିନାଶ । ଗାୟତ୍ରୀ ମନେ ମନେ ଅବିନାଶକୁ ସମ୍ମାନ କରେ । ଅଫିସରୁ ସେ ବାହାରିଗଲା ବେଳେ ଅବିନାଶ କହେ, ମୁଁ ଏହି ଝିଅକୁ ଭଲପାଏ । ଏବଂ ତା ବିଷୟରେ ସବୁକିଛି କହେ । ଦୁଇବନ୍ଧୁ ବାହାରକୁ ଦେଖନ୍ତି । ଦୁର୍ଭାଗ୍ୟବଶତଃ ଗାୟତ୍ରୀର ଗାଡ଼ି ଷ୍ଟାର୍ଟ୍ ହୁଏନାହିଁ । ଏହା ଦେଖି ସିଦ୍ଧାନ୍ତ କହେ, 'ଅବିନାଶ୍, ତୁ ମୋ ଗାଡ଼ି ନେଇ ଯା, ତାକୁ ଛାଡ଼ିଦେଇ ଆସିବୁ । ମୁଁ ଏଠି ଅପେକ୍ଷା କରିଛି ।' ଅବିନାଶ ଅଫିସରୁ ବାହାରି ଆସି ପ୍ରଶ୍ନକରେ, ଆଉ ଗାୟତ୍ରୀ ମୁହଁରେ ନିରଶା ଦେଖି କହେ, 'ଆପଣ ଯଦି ବ୍ୟସ୍ତ ଅଛନ୍ତି, ତା ହେଲେ ଚାଲନ୍ତୁ ମୁଁ ଆପଣଙ୍କୁ ଘରେ ଛାଡ଼ିଦେଇ ଆସିବି । ଗାଡ଼ି ପରେ ତିଆରି ହେଲେ ପିଉନ୍ ହାତରେ ପଠେଇଦେବି ।' ଗାୟତ୍ରୀ ରାଜି ହୋଇଯାଏ । ଅବିନାଶର କାରରେ ବସିବା ବେଳେ ମନେ ମନେ ଭାବୁଥାଏ, ଏହି ଭଦ୍ରଲୋକ ନିଶ୍ଚୟ ବଡ଼ ଧନିଘରର ପିଲା ହୋଇଥିବେ । ସନ୍ଦେହମୋଚନ ପାଇଁ ପ୍ରଶ୍ନକରେ, 'ସାର୍, ଆପଣଙ୍କର ତ ଆହୁରି ଅନେକ ବିଜନେସ୍ ଥିବ ?' ଗାୟତ୍ରୀ ନିକଟରେ ନିଜର

ପ୍ରଶଂସା କରିବାପାଇଁ ଅବିନାଶ ହଁ କହିଦେଇ କଥାକୁ ଟାଳିଦିଏ । ଗାୟତ୍ରୀ ଘର ପାଖରେ ଓହ୍ଲାଇ ଯାଉ ଯାଉ ଅବିନାଶକୁ ଘର ଭିତରକୁ ନିମନ୍ତ୍ରଣ କରେ ଚା'ହା ପିଇବା ପାଇଁ, ଅବିନାଶ ବ୍ୟସ୍ତ ଥିବାର ବାହାନା କରି ମନା କରିଦିଏ ଏବଂ ଯଦି ସେ ଫ୍ରି ଥାନ୍ତି ତେବେ ପରଦିନ ସନ୍ଧ୍ୟାରେ ମିତାଲି ରେଷ୍ଟୋରାଁରେ ଭେଟିବାର ନିମନ୍ତ୍ରଣ ଦିଅନ୍ତି, ଯାହା ଗାୟତ୍ରୀ ଖୁସିରେ ସ୍ୱୀକାର କରେ ।

ଅଫିସକୁ ଫେରିବା ପରେ ସମସ୍ତ କଥା କହିବା ପରେ ସିଦ୍ଧାନ୍ତ ନିଜେ କହେ ଯେ ଯଦି ଦରକାର ହୁଏ ତାହେଲେ ସେ ନିଜ ଗାଡ଼ି ଅବିନାଶକୁ ଦେଇ ପାରିବ । ଯେତେବେଳେ ଦର୍କାର କହିଦେଲେ ସେ ଗାଡ଼ି ପଠାଇଦେବ । ଏହାପରେ ସିଦ୍ଧାନ୍ତର ଗାଡ଼ିରେ ବସେଇ ଗାୟତ୍ରୀକୁ ରେଷ୍ଟୋରାଁ ନେବାପରେ ପରେ ସମ୍ପର୍କର ଢେଉ ବଢ଼ିଚାଲେ ଏବଂ ଗାୟତ୍ରୀ ମଧ ଧିରେ ଧିରେ ଅବିନାଶର ପ୍ରେମରେ ପଡ଼ିଯାଏ । ଧନୀ ଘର ପିଲା, ଗୋଟିଏ କମ୍ପାନୀର ମାଲିକ, ପାଖରେ ଦାମୀ କାର୍, ଆଉ କଣ ଦରକାର ତାହାର ? ଏଇମିତି ଦିନେ ବିବାହ ପ୍ରସ୍ତାବ ଦିଅନ୍ତି ଅବିନାଶ ଯାହାକୁ ଗାୟତ୍ରୀ ମନା କରିପାରେନାହିଁ, ହେଲେ ଘରେ କେମିତି ସମସ୍ତଙ୍କୁ ବୁଝାଇବ ତାହା ଜାଣିପାରେନାହିଁ । ଏଣେ ପାଠପଢ଼ା ଚାଲିଛି, ବାପା ହୁଏତ ବିବାହ ପାଇଁ ରାଜି ହୋଇନପାରନ୍ତି, ତେଣେ ଏତେ ସୁନ୍ଦର ପ୍ରସ୍ତାବକୁ ସେ ମନା କରିବାକୁ ଚାହୁଁନାହିଁ । ଅନେକ ଦିନର ପରିଚିତ ଭିତରେ ସେମାନେ ଯେ ପ୍ରେମରେ ଅନେକ ବାଟ ଆଗେଇ ଗଲେଣି । ଅବିନାଶ ଜଣାଏ ଯେ ଘରେ ତା ବିବାହପାଇଁ ଅନେକ ପ୍ରସ୍ତାବ ଆସିଲାଣି, ହୁଏତ ସେ ନିଜ ପିତାମାତାଙ୍କ ସମ୍ମୁଖରେ ଠିଆହୋଇ ମନା ବି କରିପାରିବ ନାହିଁ, ତେଣୁ କିଛି ନିଷ୍ପତ୍ତି ଶୀଘ୍ର ନେବାକୁ ହେବ । ସମସ୍ୟାର ସମାଧାନ କିଛି ପନ୍ଥା ଖୋଜିବାକୁ ଦୁହେଁ ଚିନ୍ତାରେ ପଡ଼ନ୍ତି । ଶେଷରେ ସେମାନେ ନିଷ୍ପତ୍ତି ନିଅନ୍ତି ମନ୍ଦିରରେ ଯାଇ ବିବାହ କରିବା ପାଇଁ, କିନ୍ତୁ ଅବିନାଶ କହେ, ମନ୍ଦିରରେ ବିବାହ ନ କରି ବରଂ ବିବାହ ରେଜିଷ୍ଟ୍ରାର୍ ଅଫିସରେ କଲେ ଆମ ନିକଟରେ ଆଇନ ପ୍ରମାଣିତ ସାର୍ଟିଫିକେଟ୍ ରହିବ, ଦରକାର ହେଲେ ଭବିଷ୍ୟତରେ କାମରେ ଆସିବ । ବିବାହ ପରେ ପିତାମାତାଙ୍କ ସମ୍ମୁଖରେ ଠିଆହେବେ, ସେତେବେଳେ ସେମାନେ ସ୍ୱୀକାର କରିବା ବ୍ୟତୀତ ଆଉ କୌଣସି ଉପାୟ ନଥିବ । ଗାୟତ୍ରୀ ଏହି ପ୍ରସ୍ତାବରେ ରାଜି ହୋଇଯାଏ ।

ଅବିନାଶ ଭରି ଉତ୍ସାହିତ ଲାଗୁଥିଲା । ମନେ ମନେ ଭାବୁଥିଲା ଭଲ ହେଲା ବିବାହ ପାଇଁ ପ୍ରସ୍ତାବ

ନେଇ ଯିବା କଥା ଉଠିଲାନାହିଁ । ନହେଲେ ଆଇଏଏସ୍ ବାପା ନିଜଝିଅକୁ କେବେ ଜଣେ କିରାଣୀ ଘରେ ଦେବନାହିଁ । ସେ ଯା'ହେଉ ବିବାହ ପରେ ସବୁ କଥା ସତ ସତ କରି ସେ ଗାୟତ୍ରୀକୁ କହିଦେବ । ଆଶା କରୁଛି ଗାୟତ୍ରୀ ତା କଥା ନିଶ୍ଚୟ ବୁଝିବ । ସେ ଗାୟତ୍ରୀକୁ କହେ ନିଜ ଗାଡ଼ିନେଇ ସେ ଅଫିସ ଆସିଗଲେ, ସେଇଠୁ ସେମାନେ କାରରେ ବସି ବିବାହ ରେଜିଷ୍ଟ୍ରାରଙ୍କ ପାଖରେ ବିବାହ କରିବେ । ଗାୟତ୍ରୀ ରାଜି ହୋଇଯାଏ । ସେଇ ରାତିରେ ଗାୟତ୍ରୀକୁ ଜମା ନିଦ ଆସେନି । କାଲି ନିଶ୍ଚୟ ଭାବେ ତା ଜୀବନରେ ଏକ ବଡ଼ ପରିବର୍ତ୍ତନ ଆସିବ । ଘରେ ବାପାମାଙ୍କୁ କେମିତି ଏହି ବିଷୟରେ ସେ ଜଣାଇବ ? ଅବଶ୍ୟ ସେ ବାଛିଥିବା ଜୀବନସାଥୀଟା ଯେ ଜଣେ କମ୍ପାନୀ ମାଲିକ ଓ ବଡ଼ ଧନୀ ଘର ପିଲା୍ ଏହା ଶୁଣିବା ପରେ ବାପା ହୁଏତ କିଛି କହିବେନି । ସାଙ୍ଗସାଥୀମାନେ ବି ଇର୍ଷ୍ୟା କରିପାରନ୍ତି । ଯାହା ହେବ ଦେଖାଯିବ । ଏହା ଭାବୁ ଭାବୁ ସକାଳ ହୋଇଯାଏ । ପ୍ରତିଦିନ ପରି ବାପା ମା ନିଜ ନିଜ ରାସ୍ତାରେ ବାହାରିଗଲା୍ ପରେ ଗାୟତ୍ରୀ ସ୍କୁଟିରେ ପୋଷାକ ହିଳେ ଧରି ବାହାରିପଡ଼େ । ମନେ ମନେ ଚିନ୍ତା କରୁଥାଏ ପୁରୁଣା ପୋଷାକ ସବୁ ନେଇ କଣ କରିବ ? ଅବିନାଶ ନୂଆ ପୋଷାକ କିଣିଦେବନି କି ?

ଅବିନାଶର ଅଫିସରେ ସିଦ୍ଧାନ୍ତକୁ ଦେଖି ପ୍ରଶ୍ନିଳ ନୟନରେ ଅବିନାଶକୁ ଚାହେଁ ଗାୟତ୍ରୀ । 'ସେ ମୋର ପିଲାଦିନ ସାଙ୍ଗ ସିଦ୍ଧାନ୍ତ, ଆମ ବିବାହରେ ସେ ସାକ୍ଷୀ ଭାବରେ ରହିବ ।' ସେମାନେ ତରବରରେ ଅଫିସରୁ ବାହାରି ଗାଡ଼ିରେ ବସିବାବେଳକୁ ଗାୟତ୍ରୀ ଓ ଅବିନାଶକୁ ପଛ ସିଟରେ ବସିବାକୁ ଦେଇ ସିଦ୍ଧାନ୍ତ ଗାଡ଼ି ଚଳାଏ । ଗାୟତ୍ରୀ ମନେ ମନେ ଚିନ୍ତାକରେ, ସେ ଆଗରେ ଅବିନାଶ ସହ ବସିଥାନ୍ତା, କିନ୍ତୁ ବୋଧହୁଏ ବିବାହ ପାଇଁ ଯାଉଥିବାରୁ ଅବିନାଶ ନିଜ ବନ୍ଧୁଙ୍କୁ ଗାଡ଼ି ଚଳାଇବାକୁ କହିଥାଇପାରନ୍ତି । ବିବାହ ପ୍ରକ୍ରିୟା ଖୁବ୍ ଶୀଘ୍ର ସମାପ୍ତ ହେବାପରେ ସିଦ୍ଧାନ୍ତ ଉଭୟଙ୍କୁ ଅଭିନନ୍ଦନ ଜଣାଏ ଏବଂ ଦୀର୍ଘବୈବାହିକ ଜୀବନ ପାଇଁ ଆଶୀର୍ବାଦ ବି କରେ । ସେମାନେ ବିବାହ ଅଫିସରୁ ବାହାରକୁ ଆସିବାବେଳେ ଗାୟତ୍ରୀ ମନେ ମନେ ଭାବୁଥାଏ ଅନ୍ତତଃ ଏବେ ଅବିନାଶ ଓ ସେ ଗାଡ଼ିରେ ଏକାଠି ବସି କେଉଁଆଡ଼େ ଏକା ଯାଆନ୍ତେ କି ? ହେଲେ ପୂର୍ବବତ ସିଦ୍ଧାନ୍ତ ଗାଡ଼ି ଚଳାଏ ଏବଂ ଘୋଷଣା କରେ ଏବେ ଆମେ ଅବିନାଶ ଘରକୁ ଯିବା ।

ଅବିନାଶର ଘରକଥା ଶୁଣି ଦିବାସ୍ୱପ୍ନ ଦେଖିବାରେ ବ୍ୟସ୍ତ ହୋଇଯାଏ ଗାୟତ୍ରୀ । ଭାବୁଥାଏ କେତେ ବଡ଼ ଘର ହୋଇଥିବ । ବଙ୍ଗଳାଟାଏ ତ ନିଶ୍ଚୟ ହୋଇଥିବ । ସାମନାରେ ଦୁଇ ଦୁଇଜଣ ଦରୱାନ୍ ଥିବେ । ଦେଖି ଦେଖି ବାବୁବାବୁଆଣୀଙ୍କୁ ସାଲ୍ୟୁଟ୍ ମାରିବେ । ଘରେ ଚାକର ଚାକରାଣୀ ଥିବେ, ସେ କିଛି କରିବାକୁ ପଡ଼ିବ ନାହିଁ । ସବୁକିଛି କରିବାପାଇଁ ଅର୍ଦ୍ଦଳିମାନେ ଥିବେ । ବାପାମା ତା ଘର ଦେଖିବା ପାଇଁ ଆସିଲେ ତା' ଥାଟ୍ ଦେଖି ଚମକି ପଡ଼ିବେ । ହେଲେ ଏ କଣ ହଠାତ୍ ଦୁର୍ଗନ୍ଧରେ ତା ନାକ ଫାଟି ପଡ଼ିଲା । ସ୍ୱପ୍ନ ଭାଙ୍ଗିଗଲା ଆଉ ଗାଡ଼ି ବାହାରକୁ ଦେଖିବା ବେଳକୁ ଏକ ଛୋଟ ଗଳି ଭିତରେ ଗାଡ଼ି ଯାଉଥିବାର ଦେଖୁଥିଲା । ଚାରିଆଡ଼େ ମଇଳା ଆଉ ଗୋବର ଭର୍ତ୍ତି । ଛୋଟ ପିଲାମାନେ ରାସ୍ତାମଝିରେ ସାଇକେଲ୍ ଟାୟାର୍ ଧରି ଦଉଡୁଛନ୍ତି । ସର୍ବୋପରି ସହରର ଏକ ଅନାମଧେୟ ଗରିବବସ୍ତିର ଗଳି । ସେଇଠି ହଠାତ୍ ଗାଡ଼ି ଅଟକି ଗଲାପରେ ନିଜ ନାକରେ ରୁମାଲ୍ ଦେଇ ଗାୟତ୍ରୀ କହିଲା, 'କଣ ହେଲା ? ଗାଡ଼ି ବନ୍ଦ ହୋଇଗଲା କାହିଁକି ? ଓଃ କି ଗନ୍ଧ । ମୋ ନାକରୁ ରକ୍ତ ବାହାରି ଆସିବ ନା କଣ ? ଶୀଘ୍ର ଏଠାରୁ ଚାଲ ।'

ସିଦ୍ଧାନ୍ତ ହସିଦେଇ କହିଲା, 'କୁଆଡ଼େ ଯିବ ଭାଉଜ ? ଏଇଟା ପରା ତୁମ ପୂଜ୍ୟ ଶଶୁରଙ୍କ ଘର ।' ଗାୟତ୍ରୀର ମୁହଁଟା ହଠାତ୍ ଶେତା ପଡ଼ିଗଲା । ସେ ଅବିନାଶକୁ ଚାହିଁଲା । ଅବିନାଶଙ୍କ ମୁହଁ ବି କଳା ପଡ଼ିଯାଇଥିଲା । ସେ ଖାଲି ଏତିକି କହିଥିଲା, 'ଗାଡ଼ିରୁ ଓହ୍ଲାଇ ଆସ । ଏଇଟା ଆମ ଘର ।' ଗାୟତ୍ରୀ କିଂକର୍ତ୍ତବ୍ୟବିମୁଢ଼ ହୋଇ ଗାଡ଼ିରୁ ଓହ୍ଲାଇ ଚାରିଆଡ଼େ ଦେଖୁଥାଏ, ଏହି ସମୟରେ ରାଜକିଶୋର ବାବୁ ବାହାରକୁ ଆସନ୍ତି । ଅବିନାଶ ସାଙ୍ଗରେ ଥିବା ଯୁବତୀ ଜଣକୁ ଦେଖି ପ୍ରଶ୍ନିଳ ନୟନରେ ଚାହିଁବା ବେଳେ ଅବିନାଶ ଏକ ନିଃଶ୍ୱାସରେ କହିପକାଏ, 'ବାପା ମୋତେ କ୍ଷମା କରିଦେବ । ମୁଁ ଆପଣଙ୍କୁ ନ ଜଣାଇ ବିବାହ କରିଛି । ଇଏ ହେଉଛି ମୋ ସ୍ତ୍ରୀ ଗାୟତ୍ରୀ ।' ରାଜକିଶୋର ବାବୁ କିଛି ସମୟ ନିରବ ରହିବାପରେ ପତ୍ନୀ ବାସନ୍ତୀଙ୍କୁ ଡାକି ଦିଅନ୍ତି, 'ଆହେ ଶୁଣୁଚ ? ଥାଳିରେ ଦୀପ ଆଉ ବନ୍ଦାପନା ସାମଗ୍ରୀ ନେଇ ଆସ । ଅବିନାଶ ବିବାହ କରି ଆସିଛି, ସାଥିରେ ବୋହୁ ବି ଆସିଛି ।' ରୋଷେଇ ଘରେ କାମରେ ବ୍ୟସ୍ତଥିବା ବାସନ୍ତୀଦେବୀ ଏ ସବୁ ଶୁଣିପାରନ୍ତି ନାହିଁ ତେଣୁ ପୁଣିଥରେ ଉଚ୍ଚସ୍ୱରରେ ଡାକିବାପରେ ସେ ଦଉଡ଼ି ଆସନ୍ତି ଏବଂ ସବୁ ବୁଝିବାକୁ ସମୟ ଲାଗେନାହିଁ । ସେ ତରବରରେ ଭିତରକୁ ଯାଇ ବନ୍ଦାପନା

ପାଇଁ ସାମଗ୍ରୀନେଇ ଆସନ୍ତୁ, ହେଲେ ସେ ଥାଳକୁ ହାତରେ ଠେଲିଦଏ ଗାୟତ୍ରୀ । ଥାଳ ତଳେ ପଡ଼ିବା ଶବ୍ଦରେ ବୃଦ୍ଧାମା ସରସ୍ୱତୀ ଦେବୀଙ୍କ ନିଦ ଭାଙ୍ଗିଯାଏ ଏବଂ ସେ ଆଶାବାଡ଼ିରେ ବାହାରକୁ ଆସି ସବୁ ଦେଖି ଅବାକ୍ ହୋଇ ଗୃହିଁ ରହନ୍ତି । ଏହି ସମୟରେ ଧୀର ସ୍ୱରରେ ବାସନ୍ତୀଦେବୀ କହୁଥାନ୍ତି, 'ବାମ ପାଦ ଆଗକୁ ପକେଇ ଘର ଭିତରକୁ ଆସ...' ହେଲେ ସେସବୁକୁ ଭ୍ରୂକ୍ଷେପ ନ କରି ଧପ୍ ଧପ୍ ପାଦ ପକେଇ ଗାୟତ୍ରୀ ଘର ଭିତରକୁ ପଶିଯାଏ ଏବଂ ପାଟିକରି କହେ, 'ଅବିନାଶ, ତମ ରୁମ୍ କୋଉଟା ?' ଅବିନାଶ କିଛି କହିବା ପୂର୍ବରୁ ମା ବାସନ୍ତୀ ଦେବୀ ତାକୁ ଚୁପ୍ କରାଇଦେଇ ଅବିନାଶର ରୁମ ଆଡ଼କୁ ଅଙ୍ଗୁଳି ଦେଖାନ୍ତି ।

ଅବିନାଶର ରୁମରେ ଅବିନାଶ ସହ ରହନ୍ତି ସରସ୍ୱତୀ ଦେବୀ । ରୁମ ଭିତରେ ପଶି ଅବସ୍ଥା ଦେଖି ରାଗ ତମତମ ହୋଇ ଗାୟତ୍ରୀ ସମସ୍ତ ଆସବାବପତ୍ର ଗୋଟି ଗୋଟି କରି ବାହାରକୁ ଫୋପାଡ଼ି ଦିଏ ।

ଅବଶିଷ୍ଟାଂଶ ପରବର୍ତ୍ତୀ ସଂସ୍କରଣରେ....

# ବିକୃତିର ସ୍ପନ୍ଦନ

ରଞ୍ଜନ କୁମାର ସ୍ୱାଇଁ

ଦଶମାସ ଦଶଦିନ ସେ ଯେ ଗର୍ଭ ଯନ୍ତ୍ରଣା,
ମୁକ୍ତିର ଆନନ୍ଦ କେବେ, ମୋତେ ନାହିଁ ଜଣା ।
- ମୋ ଗ୍ଭତ ଥରୁଛି ।

ଘୋର ଅନ୍ଧକାର ଭେଦ, ଆଲୋକ ଦେଖିବ,
ମାଆର ଅମୃତ ରସକୁ ଗ୍ଭଖିବ ।
- ମୋ ଗ୍ଭତ ଥରୁଛି ।

ମାଆର କାନରେ ଲୁଚକାଳି ଖେଳିବ,
ବାପା ସାଙ୍ଗେ ପୁଣି ଦୋଳିରେ ଝୁଲିବ ।
- ମୋ ଗ୍ଭତ ଥରୁଛି ।

ଶୁଣିବ ବୁଢ଼ୀ ମାଁ ଠୁ କେତେ ଯେ କାହାଣୀ,
ବୁଢ଼ାବା ସଙ୍ଗେ ବୁଲିଯିବ ପୁଣି ।
- ମୋ ଗ୍ଭତ ଥରୁଛି ।

ସବୁ ଅପେକ୍ଷାରୁ ଆଜ ମିଳିଗଲା ମୁକ୍ତି,
ମାଆର କୋଳରେ ଶୋଇ ପାଉଛି ତା ତାତି ।
- ମୋ ଗ୍ଭତ ଥରୁଛି ।

ଆଚମ୍ବିତ ଲାଗେ ଦେଖି ସମସ୍ତଙ୍କ ମୁହଁ,
ଖୁସିର ଲହର ସ୍ଥାନେ ଦୁଃଖଭରା ଲୁହ ।

- ମୋ ଗ୍ଳତ ଥରୁଛ ।

କେତେ ଯେ ଡାକ୍ତର ପୁଣି କେତେ ଯେ ସହର,
ଭଲ ହେବା ଦୂରକଥା, କ୍ଳାନ୍ତ ହେଲି ସାର ।
- ମୋ ଗ୍ଳତ ଥରୁଛ ।

ମୋଠାରେ ଅଛ କଛ ଜନ୍ମଜାତ ଦୋଷ,
ଚକସ୍ରାର ବେଶି କଛ ନାହିଁ ଅବକାଶ ।
- ମୋ ଗ୍ଳତ ଥରୁଛ ।

ସବୁ ପୂଜାପାଠ, ଆଉ ଜଡ଼ିବୁଟି ଚେଷ୍ଟା,
କାମରେ ନ ଆସେ କଛ ଭକ୍ତି ଆଉ ନଷ୍ଠା ।
- ମୋ ଗ୍ଳତ ଥରୁଛ ।

ବୁଡୁଥିବା ଡଙ୍ଗାରେ ବା କେ କରେ ସବାରୀ,
ଅକ୍ଷମ ଅକ୍ଷମ ବୋଲି ପଡୁଅଛ ହୁରୀ ।
- ମୋ ଗ୍ଳତ ଥରୁଛ ।

ସମସ୍ତଙ୍କ ପର ମୁଁ ବ ଇଶ୍ବରଙ୍କ ସୃଷ୍ଟି,
ନା କଛ କର୍ମଫଳ ଅବା ପାପ ବୃଷ୍ଟି ।
- ମୋ ଗ୍ଳତ ଥରୁଛ ।

ବନ୍ଧୁବାନ୍ଧବ ଦେଖାନାହିଁ, ନାହିଁ କେହ ମିତ,
ପର ସଙ୍ଗେ ନଜଲୋକ ଟେକଦେଲେ ହାତ ।
- ମୋ ଗ୍ଳତ ଥରୁଛ ।

ମୋତେ ଦେଖି ନିଜ ଲୋକେ କବାଟ କଲେ,
ସାଥେ ଘେନିଯିବା ପାଇଁ, କେହି ନ ମଙ୍ଗିଲେ ।
- ମୋ ଗୀତ ଥରୁଛି ।

ମୋ ଅକ୍ଷମତାର ହେଲା ବହୁତ ପ୍ରଗ୍ୱର,
ମୋ ଅଧିକାର ମାରି, କଲେ ନିଜର ବେପାର ।
- ମୋ ଗୀତ ଥରୁଛି ।

ଅକ୍ଷମତା ନାହିଁ ମୋଠି, ଅଛି ତମ ଭାବରେ,
ଅଭାବ ନାହିଁ ମୋଠି, ଅଛି ତମ ଚେଷ୍ଟାରେ ।
- ମୋ ଗୀତ ଥରୁଛି ।

ହୃଦୟରୁ ଥରେ ମୋତେ ଆପଣେଇ ଦେଖ,
ମୋ ଗୀତରେ ନିଜ କାନ ପାରି ଥରେ ଦେଖ ।
- ମୋ ଗୀତ ଥରୁଛି ।

ପୋଲିଓ ବି ଦିନେ ଥିଲେ ଘୋର ପାପ ଛାୟା,
ସମସ୍ତଙ୍କ ସହଯୋଗେ, ଆଜ ହଗିଇଛି କାୟା ।
- ମୋ ଗୀତ ଥରୁଛି ।

ମୁଁ ଅଷ୍ଟବକ୍ର, ମୁଁ ସୁରଦାସ ନୁହେଁ କିଛି ନ୍ୟୁନ,
ଧ୍ୟାନଦେଇ ଶୁଣ ଥରେ ଅକ୍ଷମତାର କ୍ଷମତା ସ୍ପନ୍ଦନ ।
- ମୋ ଗୀତ ଥରୁଛି ।

ଆଜମାବାଦ, ଚନ୍ଦ୍ରାଗଡ଼ି, ବାଲେଶ୍ୱର, ୭୫୬୦୦୧
ମୋ : ୦୭୮୯୦୩୩୬୬୧୫

# ବିଶ୍ୱ ପଖାଳ ଦିବସ ୨୦୧୫

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



ପଖାଳ ଓଡ଼ିଆମାନଙ୍କ ଅତି ପ୍ରିୟ ଖାଦ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଖରାଦିନ ଆସିବା ପୂର୍ବରୁ ଅନେକ ଘରମାନଙ୍କରେ ପଖାଳର ବ୍ୟବହାର ବୃଦ୍ଧିପାଇଥାଏ । ସାଧାରଣତଃ ଭାତକୁ ପାଣିରେ ପକାଇ ଖାଇବାର ବିଧିକୁ ପଖାଳ ବୋଲି କୁହାଯାଏ, କିନ୍ତୁ ଏହାର ଭିନ୍ନ ଭିନ୍ନ ପ୍ରକାର ବି ରହିଛି, ଏବଂ ଓଡ଼ିଶା ସମେତ ପୂର୍ବୋତ୍ତର ରାଜ୍ୟସମୂହ ଯଥା ପଶ୍ଚିମ ବଙ୍ଗ, ଆସାମ, ଏବଂ ଛତିଶଗଡ଼ରେ ମଧ୍ୟ ପଖାଳ ଖିଆଯାଉଥିବାର ଉଦାହରଣ ରହିଛି । ଏହା ବ୍ୟତୀତ ଭାରତ ବାହାରେ ନେପାଳ ଏବଂ ବଙ୍ଗଳାଦେଶରେ ମଧ୍ୟ ପଖାଳର ଗ୍ରହଣୀୟତା ରହିଛି ।

ପଖାଳର ଲୋକପ୍ରିୟତାକୁ ଦେଖି କିଛି ଉତ୍ସାହୀ ଓଡ଼ିଆଙ୍କ ଆହ୍ୱାନରେ ପ୍ରତିବର୍ଷ ମାର୍ଚ୍ଚମାସ ୨୦ ତାରିଖକୁ ବିଶ୍ୱ ପଖାଳ ଦିବସ ଭାବରେ ପାଳନ କରାଯାଉଛି । ପଖାଳର ଆକ୍ଷରିକ ଅର୍ଥ ସଂସ୍କୃତ ଶବ୍ଦ ପ୍ରକ୍ଷାଳନ ବା ଓଡ଼ିଆ ଶବ୍ଦ ପଖାଳିବା (ଧୋଇବା) ରୁ ଅଣାଯାଇଥିବା କୁହାଯାଏ । ଅର୍ଜୁନ ଦାସ ( ୧୫୨୦ - ୧୫୩୦ ଖ୍ରୀଷ୍ଟାବ୍ଦ ) ଙ୍କ କବିତା ସଂଗ୍ରହ କଳ୍ପଲତାରେ ଏହାର ବ୍ୟବହାର ବିଷୟରେ ଉଲ୍ଲେଖ ରହିଛି । ସଠିକ ଭାବରେ କୁହାଯାଇ ପାରିବନାହିଁ ଯେ ପଖାଳ କେବେ ଆଉ କେମିତି ଓଡ଼ିଆ ମାନଙ୍କ ଖାଦ୍ୟରେ ସଂପୃକ୍ତ ହୋଇଥିଲା । କିନ୍ତୁ ଏହା ପୁରୀ ଶ୍ରୀ ଜଗନ୍ନାଥଙ୍କ ଭୋଗରେ ଲାଗୁଥିବା କଥା ଆମେ ଇତିହାସରୁ ଜାଣିବାକୁ ପାଉ ।  ଦକ୍ଷିଣପୂର୍ବ ଏସିଆର ସମସ୍ତ ଦେଶ ବିଶେଷତଃ ଧାନ ଅମଳ ଉପରେ ନିର୍ଭର କରନ୍ତି ଏବଂ ଭାତର ବ୍ୟବହାର ସମସ୍ତ ଦେଶରେ ଦେଖାଯାଏ । ହୁଏତ ବାସି ଭାତକୁ ଆଗାମୀ ଦିନରେ ଖାଇବା ଯୋଗ୍ୟ କରି ରଖିବାପାଇଁ ସେଥିରେ ପାଣିଦେଇ ରଖିବା ପରଠାରୁ ପଖାଳ ଖାଇବାର ଆରମ୍ଭ ହୋଇଥାଇପାରେ ବୋଲି ଆମେ ଅନୁମାନ କରୁ ।




ଏହାକୁ ପ୍ରସ୍ତୁତ କରିବା ପ୍ରଣାଳୀ ବହୁତ ସହଜ । ଯଦି ଆପଣ ସଜ ପଖାଳ ଖାଇବାକୁ ଚାହାନ୍ତି, ତେବେ ଗରମ ଭାତକୁ କଂସାରେ ନେଇ ସେଥିରେ ପାଣି ପକାଇ ଆବଶ୍ୟକ ଅନୁସାରେ ଲୁଣ ଏବଂ ଲେମ୍ବୁ କିମ୍ବା ଦହି ପକାଇ ଖାଇପାରିବେ । ଆଉ ଯଦି ବାସିପଖାଳ ଖାଉଥାନ୍ତି, ତେବେ ବାସି ଭାତରେ ଦହି କିମ୍ବା ଅନ୍ୟ ସାମଗ୍ରୀ ମିଶେଇ ଖାଇ ପାରିବେ ।

ପଖାଳରେ ପୁଣି ବିବିଧତା ଦେଖାଦେଉଛି । ଅନେକ ପ୍ରକାରର ପଖାଳ ଦେଖିବାକୁ ମିଳିଲାଣି । ଖରାଦିନମାନଙ୍କରେ ଓଡ଼ିଶାର ପ୍ରମୁଖ ସହରମାନଙ୍କରେ ବିଭିନ୍ନ ହୋଟେଲ ଏବଂ ଭୁବନେଶ୍ୱରର କିଛି ତାରକା ହୋଟେଲରେ ମଧ୍ୟ ପଖାଳ ମିଳୁଥିବା କଥା ଆମେ ଜାଣିବାକୁ ପାଇଲୁଣି । ବ୍ରହ୍ମପୁର ସହରରେ ବିଭିନ୍ନ ହୋଟେଲ ସାମନାରେ ପଖାଳ ମିଳୁଥିବା କଥା ସେମାନେ ଉଲ୍ଲେଖ କରିଛନ୍ତି । ମାତ୍ର ପନ୍ଦରରୁ କୋଡ଼ିଏ ଟଙ୍କାରେ ପଖାଳ ଖାଇବାକୁ ମିଳୁଛି ।

**ପଖାଳର ପ୍ରକାର :**

୧. ସଜ ପଖାଳ : ଗରମଭାତରେ ପାଣିଦେଇ ଆପଣ ଖାଇପାରିବେ ।

୨. ବାସି ପଖାଳ : ବିଗତ ରାତ୍ରୀର ବଳକା ଭାତକୁ ତୋରାଣୀ କିମ୍ବା ପାଣିଦେଇ ରଖି ଖାଇପାରିବେ ।

୩. ଦହି ପଖାଳ : ସଜ ହେଉ ବା ବାସି ପଖାଳ କଂସାରେ ଦହି ଏବଂ ଫୁଟଣ ଦେଇ ଆପଣ ଖାଇପାରିବେ ।

୪. ଜୀରା ପଖାଳ : ପଖାଳରେ ଜୀରାକୁ ଭାଜି, ଭୃସଙ୍ଗପତ୍ର ପକେଇ ଖାଇବେ ।

ପଖାଳ ସହିତ ଶାଗଭଜା, ବଡ଼ିଚୁରା, ମାଛ ଭଜା, ଶୁଖୁଆ ପୋଡ଼ା/ଭଜା, ଆଳୁ ଭର୍ତ୍ତା, ବାଇଗଣ / ପୋଟଳ / ଜହ୍ନି / ଭେଣ୍ଡି ପୋଡ଼ା, ତରକାରୀ ଆଦି ଖାଇବାକୁ ଦିଆଯାଏ । କିଛି ଲୋକ ପଖାଳରେ କଞ୍ଚା ମରିଚ ଭାଙ୍ଗି ପକାନ୍ତି ଆଉ ଖାଆନ୍ତି । ବେଳେ ବେଳେ ଦେଶୀ / ଉଲି (ସାନ) ପିଆଜ ବି ପଖାଳରେ ଖିଆଯାଏ । ପଖାଳ ଖାଇଦେଇ ତୋରାଣିକୁ ପିଇଦେଲେ, ଅତ୍ୟନ୍ତ ଶାନ୍ତି ମିଳେ ଏବଂ ଅନେକ ସମୟରେ ନିଦ ବି ଲାଗିଥାଏ ।

ପଖାଳ ଖାଇବା ଦ୍ୱାରା ଅନେକ ଲାଭ ବି ହୁଏ । ଯେମିତି ବଳକା ଥିବା ଭାତ ନଷ୍ଟ ହୁଏନାହିଁ । ସାଧାରଣତଃ ଅନେକ ଘର ମାନଙ୍କରେ ମହିଳାମାନେ ପଖାଳକୁ ବାଧ୍ୟତାମୂଳକ ଭାବେ ଖାଇଥାନ୍ତି, ଅନ୍ନ ନଷ୍ଟ ନକରିବା ପାଇଁ । ଯେହେତୁ ଭାତକୁ ପାଣିରେ ବୁଡ଼ାଇ ରଖାଯାଏ ତେଣୁ ଭାତରେ ଥିବା ଅନେକ ପୁଷ୍ଟିକର ତତ୍ତ୍ୱ ତୋରାଣୀରେ ରହିଯାଏ, ତେଣୁ ତାହା ସ୍ୱାସ୍ଥ୍ୟପାଇଁ ଲାଭଜନକ । କିଛି ଲୋକ କହନ୍ତି ଓଜନ ବଢ଼େଇବାପାଇଁ ତୋରାଣି ପିଇବା ଏହି ଭଲ ଉପାୟ । ଆଉ ଖରାଦିନମାନଙ୍କରେ ବିଶେଷତଃ ଆମ ରାଜ୍ୟର ତାପମାତ୍ରା ବହୁତ ଅଧିକ ହେଉଥିବା ଯୋଗୁଁ, ଦେହରୁ ଝାଳରେ ଗ୍ଲାଯାଉଥିବା ଜଳୀୟ ଅଂଶକୁ ବହୁମାତ୍ରାରେ ସଞ୍ଚୟ କରିଦେଉ । ତେଣୁ ଖରାଦିନିଆ ପାଗରେ ପଖାଳ ଖାଇଲେ ଅଂଶୁଘାତ ଜନିତ ସମସ୍ୟା ହୁଏ ନାହିଁ । ତରଳ ଝାଡ଼ା ହେଉଥିଲେ କିମ୍ବା ପେଟ ଗରମ ହୋଇଥିଲେ ପଖାଳ ଖାଇବା ଦ୍ୱାରା ସମସ୍ୟାର ସମାଧାନ ହୋଇପାରେ ।

ତା ହେଲେ ଆସନ୍ତୁ ଆମେ ସମସ୍ତେ ପାଳିବା ବିଶ୍ୱ ପଖାଳ ଦିବସ । ଓଡ଼ିଆଙ୍କ ପ୍ରିୟ ଖାଦ୍ୟ ପଖାଳ ଖାଇଦେଇ ଏହି ଦିନକୁ ପାଳନ କରନ୍ତୁ ଏବଂ ନିଜ ଛବି କ୍ୟାମେରା କିମ୍ବା ମୋବାଇଲରେ ଉଠାଇ ଆମ ନିକଟକୁ ପଠାନ୍ତୁ । ଆମେ ସେ ସବୁକୁ ନେଇ ଏକ ବିଶେଷ ଆଲେଖ୍ୟ ପ୍ରସ୍ତୁତ କରିବୁ ।

ବିଶ୍ୱ ପଖାଳ ଦିବସର ଅନେକ ଅଭିନନ୍ଦନ ।

ବୀମାନଗର, ୨ୟ ଗଳି, ବ୍ରହ୍ମପୁର
ଫୋନ୍ : ୯୦୪୦୯୮୫୪୬୩
ଇ-ମେଲ୍ : aahwaan@gmail.com

# ବର୍ଷା ଆଉ ମୋ ପ୍ରିୟା

ସ୍ୱରୂପ କୁମାର ମଲ୍ଲ



ଝିପି ଝିପି ବର୍ଷା ରାତିରେ,
ଏକା ଏକା ଚାଲିଯାଉଥିଲି  ରାସ୍ତାରେ
ଥର୍ ଥର୍ ହେଉଥିଲା ଛାତିରେ,
ଫର୍ ଫର୍ ଉଡୁଥିଲା ମନ ଆକାଶରେ,
ଆସିଯାଇଥିଲି ସପନରେ,
ବସାବାନ୍ଧି ଯାଇଥିଲି ମନରେ,
ଚାହିଁ ବସିଥିଲି ତମ ଫେରିବା ବାଟକୁ,
ତମେ ଚାଲିଯାଇଥିଲ କୋଉ ଅଜଣା ଦୁନିଆକୁ,
ଦିନ ପରେ ଦିନ ବିତି ଚାଲିଗଲା,
ସମୟଚକ ଗଡ଼ି ଗଡ଼ି ଚାଲିଥିଲା.

ହଠାତ  ତମ ସହ  ଦେଖା ହେଇଗଲା,
ହାଏ ରବବା ଅସରାଏ ବର୍ଷା ହେଇଗଲା,
ତମକୁ କଲି ପ୍ରେମ ନିବେଦନ,
ତମେ କଲନି ତାହା ପ୍ରତ୍ୟାଖାନ,
ଦୁନିଆ ଜାଣିଲା ଆମ ପ୍ରେମ କାହାଣୀ,
ଛତା ତଳେ ଏକ  ହେଲା  ଆମ ଚାହାଣି,
ହଠାତ ଶୁଭିଲା ଶବ୍ଦ ବଜ୍ରପାତର,
ତଳେ ଲୋଟିଥିଲା ଶରୀର ମୋ ପ୍ରିୟାର
ଧିରେ ଧିରେ ଆକାଶରୁ ଚାଲିଯାଇଥିଲା ଶ୍ରାବଣ,
ତମେ କୁଆଡେ ହଜିଗଲ ଦେଖୁଛି ଖାଲି ତମ ସପନ.

# ଉଠ ହେ -

ଜଗନ୍ନାଥ ସାହୁ

ପଗଚୀ ରେ ଫାଟିଲାଣି ସିନ୍ଦୁର,
କାକଳୀ ରେ ଗୁଞ୍ଜରତ ଏ' ଧରା,
କୁଆ ରାବଲାଣି କଣ୍ଠ ଫଟାଇ,
ଉଠ ହେ ତପନ ଆଉ ନଶୋଇ ।

ଏ ମାଟିରେ ବାଞ୍ଛିଦେବ ପ୍ରକାଶ,
ପୁଲକିତ ହେବ ପୃଥ୍ୱୀ ଆକାଶ,
ଧରଣୀ ରାଣୀ ଆନନ୍ଦେ ହସିବ,
ଆଖିରୁ ତା' ନିଶି ତନ୍ଦ୍ରା ଖସିବ ।

ଗୃଷୀଭାଇ ଡାକଦେବ କ୍ଷେତରେ,
ନାନାବାଦ୍ୟ ସଂଗୀତର ରାଗରେ,
ଝର ପଡୁଥିବ ମଧୁ ମୁର୍ଚ୍ଛନା,
ହୃଦୟକୁ କରିବ ଆନମନା ।

ଯେବେ ତୁମେ ଲୁଚିଯିବ ପଶ୍ଚିମେ,
ଦୁନିଆଁ ଟା ଶୋଇଯିବ ଆରାମେ,
ମାଡି ଆସିବ ରାତ୍ରୀର ଅନ୍ଧାର,
ଖୋଲିଦେବ ଆଳସ୍ୟର ସମ୍ଭାର ।

ସୁଙ୍ଗୁଡା, ଚଣ୍ଡିଖୋଲ, ଯାଯପୁର
ମୋ-୯୭୫୮୯୦୩୩୭୭

# ସଂସ୍କୃତିର ପରିଭାଷା

ବାଲ୍ମୀକି ନାୟକ



ଦୁନିଆରେ ମାନବ ବିକାଶ ଲାଭ କରି ସମାଜ ଗଠନ ହେବା ସହିତ ସାମାଜିକ ନୀତିନିୟମ ବି ତିଆରି ହେଲା । ସମାଜର ଜନ ସାଧାରଣଙ୍କୁ ନିୟନ୍ତ୍ରଣ କରିବାପାଇଁ ଓ ଶୃଙ୍ଖଳା ରକ୍ଷା କରିବାପାଇଁ ଅନେକ ପ୍ରକାର ନୀତି ଓ ନିୟମ ଆବଶ୍ୟକ ଥିଲା । ଧିରେ ଧିରେ ନୀତି ଓ ନିୟମର ଶୃଙ୍ଖଳା ଭିତ୍ତିରେ ସମାଜରେ ସଂସ୍କାର ଆସିଲା । ବ୍ୟକ୍ତିଗତ ଜୀବନର ବିକାଶଠାରୁ ଆରମ୍ଭ କରି ପରିବାର ଓ ସମାଜର ମଙ୍ଗଳ ସାଧନ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ସଂସ୍କାରକୁ ବାଧ୍ୟତାମୂଳକ ଭାବେ ପାଳନ କରାଗଲା । ଯେ କେହି ସମାଜ ନିର୍ଦ୍ଧାରିତ ସଂସ୍କାରକୁ ଅବଜ୍ଞା କରିବ ତା ପାଇଁ କଠୋର ଦଣ୍ଡ ବିଧାନ ବି ରହିଲା । ସଂସ୍କାରକୁ ମାନି ଚଳିବା ନୀତିକୁ ସଂସ୍କୃତି ରୂପେ ମାନ୍ୟତା ମିଳିଲା ।

ସଂସ୍କାରକୁ ଆମେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିପାରିବା । ଗୋଟିଏ ହେଉଛି, ଭୌତିକ ଜଗତର ସଂସ୍କାର । ଏହି ସଂସ୍କାର ଭିତରେ ମଣିଷର ସମସ୍ତ ଭଲ ମାନବୀୟ ଗୁଣ ଯଥା; ଦୟା, କ୍ଷମା, ତ୍ୟାଗ, ପରୋପକାର, ସଂବେଦନଶୀଳ, ସହନଶୀଳ ଓ ପ୍ରେମ ରହିବା ଉଚିତ । ଦ୍ୱିତୀୟଟି ହେଉଛି ଅଧିଭୌତିକ ବା ଆଧାତ୍ମିକ ସଂସ୍କାର । ଏହା ଭିତରେ ବିଶ୍ୱକୁ ସୃଷ୍ଟି କରିଥିବା (?) ତଥାକଥିତ ଈଶ୍ୱରଙ୍କ ପ୍ରତି ଗଭୀର ଆସ୍ଥା ଓ ଆଦିମ କାଳରୁ ରଚନା କରାଯାଇଥିବା ଧର୍ମଶାସ୍ତ୍ର ଉପରେ ଅତୁଟ ବିଶ୍ୱାସ ରଖି ପୂଜା, ପ୍ରାର୍ଥନା, ଯଜ୍ଞ ଆଦି ଧର୍ମୀୟ କର୍ମକାଣ୍ଡ କରିବା ।

ମଣିଷର ପ୍ରକୃତି ଭିତରେ ଉତ୍ତମ ଗୁଣ ସହିତ ଅନେକ ବଦ୍‌ଗୁଣ ଯଥା; ଈର୍ଷ୍ୟା, ଦ୍ୱେଷ, ଘୃଣା, ହିଂସା, ଲୋଭ, ମୋହ ଆଦି ଭରି ରହିଥିବାରୁ ଭୌତିକ ସଂସ୍କାର କଳୁଷିତ ହୋଇପଡୁଛି । ସମାଜର

ଦଣ୍ଡ ବ୍ୟବସ୍ଥା ଯେତେ କଠୋର ହେଲେ ବି ସମାଜରେ ବିଭିନ୍ନ ପ୍ରକାର ଅନ୍ୟାୟ, ଅତ୍ୟାଚାର, ଶୋଷଣ, ହତ୍ୟା, ଯୌନାତ୍ୟାଚାର, ଧର୍ଷଣ ଭଳି ଅନେକ ଦୋଷ ଦେଖାଯାଉଛି । ସେଥିପାଇଁ ମାନସିକ ସ୍ତରରେ ଭୟ ସୃଷ୍ଟିକରି ଦୁଷ୍ଟ ପ୍ରକୃତିର ମଣିଷ ମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ଆଧାତ୍ମିକ ସଂସ୍କାର ଏକ ସଫଳ ଉପାୟ ବୋଲି ପୁରୁଣା କାଳର ସମାଜ ସୁଧାରକ ମାନେ ଚିନ୍ତା କରିଥିଲେ । ସେଥିରେ ପାପ ଓ ପୂଣ୍ୟକର୍ମ ଅନୁସାରେ ନର୍କ କିମ୍ବା ସ୍ୱର୍ଗ ଭୋଗ କରିବା ତଥ୍ୟକୁ ବିଭିନ୍ନ କାହାଣୀ ମାଧ୍ୟମରେ ପ୍ରଚାର କରିଥିଲେ । ପରବର୍ତ୍ତୀ କାଳରେ ସେହି ସବୁ କାଳ୍ପନିକ ଚରିତ୍ର ଓ କାହାଣୀ ଜନମାନସକୁ ପ୍ରଭାବିତ କରି ରଖିଛି । ଆଧାତ୍ମିକ ସଂସ୍କୃତି ନାମରେ ଆଜିର ଆଧୁନିକ ଓ ବିଜ୍ଞାନ ଯୁଗରେ ବି 'ଲକୀର କେ ଫକୀର' ନୀତିରେ ପୁରୁଣା ପର୍ବପର୍ବାଣୀକୁ କୌଣସି ବିଶେଷ ପରିବର୍ତ୍ତନ ନ କରି ଆମେ ପାଳନ କରି ଆସୁଛୁ । ଯେଉଁ ଗଣପର୍ବ ଗୁଡ଼ିକ ଆଗରୁ କେବଳ ଗାଁ ଗହଳରେ ଗରିବ ଓ ଅଶିକ୍ଷିତ ଲୋକମାନେ କୌଣସି କାରଣ ନ ଖୋଜି, ବିଶ୍ୱାସର ସହ ପାଳନ କରୁଥିଲେ, ଆଜି ସହରରେ ବାସ କରୁଥିବା ଧନୀ ଓ ଶିକ୍ଷିତ ଲୋକମାନେ ମଧ୍ୟ ସେହି ସବୁ ଗଣପର୍ବକୁ ପରମ୍ପରା ନାମରେ ପାଳନ କରିବାକୁ ଚେଷ୍ଟା କରୁଛନ୍ତି । ପୂର୍ବକାଳର ଗଣପର୍ବରେ ବୈଜ୍ଞାନିକ କାରଣ କଣ ଅଛି ? ଆଜିର ଯୁଗରେ ସେ ଗୁଡ଼ିକ ପାଳନ କରିବା କେତେ ଆବଶ୍ୟକ ? ସେ ଗୁଡ଼ିକ ପାଳନ ନ କଲେ ଆମର କଣ କ୍ଷତି ହେବ ? ସେ ସଂପର୍କରେ ଚିନ୍ତା କରିବା ବା ପ୍ରଶ୍ନ କରିବାକୁ କେହି ସାହାସ କରିପାରୁନାହାନ୍ତି ।

ଓଡ଼ିଶାର ଏକ ପାରମ୍ପରିକ ଗଣ ପୂଜା ହେଉଛି, କାର୍ତ୍ତିକ ମାସର 'ବୋଇତ ଭସାଣୀ' ପର୍ବ । କାର୍ତ୍ତିକ ମାସକୁ ଏକ ଧର୍ମମାସ ବୋଲି କହନ୍ତି । ଏହି ମାସରେ ଆହୁରି ଅନେକ ପ୍ରକାର ଧର୍ମୀୟ କର୍ମକାଣ୍ଡ କରାଯାଏ । ପ୍ରଶ୍ନ ଉଠୁଛି, କେବଳ କାର୍ତ୍ତିକ ମାସଟି ଯଦି ଧର୍ମମାସ, ତେବେ ଅନ୍ୟ ଏଗାରଟି ମାସ କଣ ଅଧର୍ମ ମାସ ? ମହାଦେବ ଦାସଙ୍କ ରଚିତ 'କାର୍ତ୍ତିକ ମହାତ୍ମ୍ୟ' କହୁଛି;

"କାର୍ତ୍ତିକ ମହିମା ଯେ ଶୁଣି, ଶ୍ରବଣେ ସର୍ବଧର୍ମ କିଣି ।

ହୃଦେ ରଖିବ ଯତ୍ନକରି, ଅଶେଷ ଜନ୍ମପାପ ହରି ।

ବଢ଼ଇ ଆୟୁ ଯଶ ଧର୍ମ, ଶୀରି ସମ୍ପଦ ଶୁଭ କର୍ମ ।

ବିଶେଷ ହୁଏ ଧର୍ମ ମନ, ଉତ୍ତମ ଜ୍ଞାନ ଧନ ଜନ ।

ଅବଶ୍ୟ ଲଭଇ ଏତକ, କେବେ ହେଁ ନ ଲାଗେ ପାତକ ।

ନଳିନୀ ଜଳେ ଯେହ୍ନେ ଆପ, ପଦ୍ମପୁରାଣେ ତେହ୍ନେ ପାପ ।

ଶରୀର ନ ପାରଇ ପୀଡ଼ି, ଶ୍ରବଣ ମାତ୍ରେ ଯାଏ ଛାଡ଼ି ।"

ପ୍ରଶ୍ନ ଉଠୁଛି, ଏଗାର ମାସରେ ମଣିଷ କରିଥିବା ପାପ ବା ଅପକର୍ମର ଦୋଷ କଅଣ ଏହି ପୁରାଣ ଶ୍ରବଣ କରି କାର୍ତ୍ତିକ ମାସରେ ପୂଜାପାଠ କଲେ କ୍ଷୟ ହୋଇଯିବ ?

ଆଉ କେତୋଟି ମଜା କଥା ହେଉଛି, ଭାରତର ପ୍ରତ୍ୟେକ ପ୍ରଦେଶରେ ହିନ୍ଦୁମାନେ ବାସ କରୁଥିଲେ ବି ଉତ୍ତର ଭାରତୀୟମାନେ ପୂର୍ଣ୍ଣିମୀଠାରୁ ଆସନ୍ତା ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଏକ ମାସ ଗଣନା କରୁଛନ୍ତି, ଅଥଚ ଦକ୍ଷିଣ ଭାରତୀୟମାନେ ଅମାବାସ୍ୟାଠାରୁ ଆସନ୍ତା ଅମାବାସ୍ୟା ପର୍ଯ୍ୟନ୍ତ ଏକ ମାସ ଗଣନା କରୁଛନ୍ତି । ଅର୍ଥାତ୍ କାର୍ତ୍ତିକ ମାସଟି ପନ୍ଦର ଦିନଆ ନା ପଇଁତ୍ରିଶି ଦିନଆ ମାନି ଆମେ ପୂଜା ବ୍ରତ କରିବା ? ଓଡ଼ିଶାରେ ଗୁରୁବାରଟି ଲକ୍ଷ୍ମୀବାର ବୋଲି ମାନନ୍ତି । ଅଥଚ କର୍ଣ୍ଣାଟକରେ ଶୁକ୍ରବାରଟି ଲକ୍ଷ୍ମୀବାର ବୋଲି ମାନନ୍ତି । ପ୍ରଶ୍ନ ଉଠୁଛି, ଓଡ଼ିଶାରେ ଜନ୍ମଗ୍ରହଣ କରି ବଡ଼ ହୋଇଥିବା ଓଡ଼ିଆ ବୋହୁଟିଏ କର୍ଣ୍ଣାଟକରେ ଆସି ରହିଲେ ସେ କେଉଁ ବାରଟିକୁ ଲକ୍ଷ୍ମୀବାର ବୋଲି ମାନିବ ? ଯଦି ଗୁରୁବାରକୁ ମାନିବ ଓ ଶୁକ୍ରବାରକୁ ମାନିବ ନାହିଁ, ତେବେ ଏଠିକା ମହାଲକ୍ଷ୍ମୀ କଣ ତାକୁ କ୍ଷମା କରିଦେବେ ? ମାନସିକ ଦ୍ୱନ୍ଦ ଓ ଧର୍ମଭୟ ଦୃଷ୍ଟିରୁ ସେ ହୁଏତ ଦୁଇଟି ବାରକୁ ମାନିବ ।

ବର୍ତ୍ତମାନ ଆମେ ବାସ୍ତବିକ, ଚଳନ୍ତି ଆଧୁନିକ ସମାଜର ଚିତ୍ର ଦେଖିବା । ଯେଉଁ ସ୍ତ୍ରୀମାନେ ଉଚ୍ଚ ଶିକ୍ଷା ପ୍ରାପ୍ତକରି ନିଜର ମାତୃଭୂମିରୁ ଦୂରରେ ଥିବା ସହର ମାନଙ୍କରେ ଚାକିରୀ କରୁଛନ୍ତି, ସେମାନେ ଓଡ଼ିଆ ଘରର ସାଧାରଣ ଶିଷ୍ଟାଚାର, ସଣ୍ଟଣା ଓ କର୍ତ୍ତବ୍ୟବୋଧକୁ ପ୍ରାୟ ପାଶୋରି ଦେଲେଣି । ଶାଢ଼ୀ ପିନ୍ଧିବା ତ ଦୂରର କଥା, ହାତରେ ଶଂଖା, ମଥାରେ ସିନ୍ଦୁର ବି ପିନ୍ଧିବାକୁ ଅପସନ୍ଦ କଲେଣି । ଆଧୁନିକ ପରିପାଟୀକୁ ମୁକ୍ତ ମନରେ ସ୍ୱୀକାର କଲେଣି । ଏହାର ଅର୍ଥ ନୁହେଁ ଯେ ସେମାନେ କିଛି ଖରାପ

କରୁଛନ୍ତି । ସମୟ ଓ ପରିବେଶ ସହିତ ନିଜକୁ ଖାପ ଖୁଆଇ ସହଜ ଭାବରେ ଜୀବନଶୈଳୀରେ ପରିବର୍ତ୍ତନ ଆଣିବା ଖରାପ କଥା ନୁହେଁ । କିନ୍ତୁ ସେହିମାନେ ଓଡ଼ିଶାର ଆଧାତ୍ମିକ ସଂସ୍କୃତି ନାମରେ ଗଣପର୍ବ ପାଳନ କରିବାକୁ ବେଶୀ ଉତ୍ସାହିତ ହେଉଥିବା ଦେଖି ମନରେ ପ୍ରଶ୍ନ ଉଠୁଛି - ଏମିତି ଆତ୍ମ ପ୍ରବଞ୍ଚନା କାହିଁକି ?

ଗଣପର୍ବ ଓଡ଼ିଶାର ଗାଁ ଗହଳି ଲୋକମାନଙ୍କ ପାଇଁ ଏକ ମନୋରଞ୍ଜନର ମାଧ୍ୟମ ଥିଲା । ସମସ୍ତେ ଏକାଠି ହୋଇ ନାଚ, ଗାଇ, ହସଖୁସିରେ ବନ୍ଧୁ ମିଳନର ଆନନ୍ଦ ଉପଭୋଗ କରୁଥିଲେ । ଗାଁରୁ ଆସି ସହଜରେ ସମସ୍ତ ଭୌତିକ ସାଧନ ବ୍ୟବହାର କରୁଥିବା ଆଧୁନିକ ଲୋକମାନେ କେବେ ତାଙ୍କର ପିଲାମାନଙ୍କର ବାର୍ଥ୍ ଡ଼େ ପାଳନ କରିବାକୁ ଗାଁକୁ ଯାଇ କେକ୍ କାଟି ବନ୍ଧୁ ପରିଜନଙ୍କ ସହ ଖୁସି ବାଣ୍ଟୁଛନ୍ତି କି ? ନୁହେଁ । କାରଣ ଏହା ହେଉଛି ସହରର ସଂସ୍କୃତି । ସେହିଭଳି ଗାଁ ଗହଳିର ପର୍ବକୁ ସହରକୁ ଟାଣି ଆଣି ପାଳନ କରିବା ଦ୍ୱାରା ସେହି ପର୍ବର ମହତ୍ତ୍ୱ ନଷ୍ଟ ହୋଇଯାଉଛି ।

ଓଡ଼ିଆ ସଂସ୍କୃତିର ଏକ ଅବକ୍ଷୟ ମୂଲ୍ୟ ସଂପର୍କରେ ମୋର ବ୍ୟକ୍ତିଗତ ଅନୁଭବ ଏଇଠି ଉଲ୍ଲେଖ କରିବା ଉଚିତ ଭାବୁଛି । ବାଙ୍ଗାଲୋର ସହରରେ ଅନେକ ଓଡ଼ିଆ ଆସି ଚାକିରୀ ଓ ବ୍ୟବସାୟ କରୁଛନ୍ତି । ମୁଁ ଜଣେ ଓଡ଼ିଆପ୍ରେମୀ । ଓଡ଼ିଆ ଭାଷା ପ୍ରତି ମୋର ଭୀଷଣ ଦୁର୍ବଳତା ରହିଛି । ରାସ୍ତା ବା ବଜାରରେ ଓଡ଼ିଆରେ କେହି କଥା ହେଉଥିବା ଶୁଣିଲେ ମୁଁ ଆଗୁଆ ହୋଇ ନମସ୍କାର କରି କହେ - ଆଜ୍ଞା ଆପଣ ଓଡ଼ିଆ ? ଥରେ ଜଣେ ଭଦ୍ରବ୍ୟକ୍ତି ମୋରେ ସନ୍ଦେହ ଦୃଷ୍ଟିରେ ଚାହିଁ ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ, ହଁ, ତ କଣ ହେଲା ସେଇଠୁ ? ତାଙ୍କର ପ୍ରତିପ୍ରଶ୍ନ ଶୁଣି ମୁଁ କଅଣ ଆଉ ଉତ୍ତର ଦେଇଥାନ୍ତି ? ଆହୁରି ଅନେକ ଲୋକମାନଙ୍କ ଠାରୁ ଅନେକ ପ୍ରକାର ଉତ୍ତର ପାଇଛି ଯାହା ପ୍ରମାଣ କରୁଛି ଯେ, 'ଆମେ ଆଉ ସେହି ଦରିଦ୍ର ଓ ପଛୁଆ ପ୍ରଦେଶର ଲୋକ ନୁହଁ । ଆମର ସଭ୍ୟତା ଓ ସଂସ୍କୃତି ବେଶ୍ ମାର୍ଜିତ ଓ ଆଧୁନିକ ।' ଓଡ଼ିଆ ଭାଷାରେ ପାଠପଢ଼ା ଆରମ୍ଭ କରି ଇଂରାଜୀ ଭାଷାରେ ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ଡିଗ୍ରୀ ହାସଲ କରିଥିବା ଓଡ଼ିଆ ଯୁବକଯୁବତୀ ଆଜି ଓଡ଼ିଆ ପତ୍ରିକା ଖଣ୍ଡେ ପଢ଼ିବାକୁ ନାକ ଟେକୁଛନ୍ତି । ବେଳେ ବେଳେ ମୁଁ ଦେଖି ଆଶ୍ଚର୍ଯ୍ୟ ହୁଏ, ଯେ ଦୁଇଜଣ ଓଡ଼ିଆ ଲୋକ ହିନ୍ଦୀ କିମ୍ବା

ଇଂରାଜୀରେ କଥାବାର୍ତ୍ତା ହୁଅନ୍ତି । ଏହାର କାରଣ ପଚାରିଲେ ନିର୍ଲ୍ଲଜ ଭାବେ ଉତ୍ତର ଦିଅନ୍ତି, 'ବାହାରେ ରହି ରହି ଅଭ୍ୟାସ ହୋଇଗଲାଣି । ଓଡ଼ିଆରେ ଆମେ ଠିକ୍ ଭାବରେ ଭାବ ବ୍ୟକ୍ତ କରିପାରୁନାହୁଁ ।' ଏହାକୁ ଆପଣ କେଉଁ ସଂସ୍କୃତି ବୋଲି କହିବେ ।

ଯେଉଁ ସମୟରେ ଯାତାୟାତ କରିବାପାଇଁ ସାଧନ ସୀମିତ ଥିଲା, ସେହି ସମୟରେ ସାହସୀ ଓଡ଼ିଆ ସାଧବ ପୁଅମାନେ ନିଜର ଉତ୍ପାଦିତ ବସ୍ତୁ ଗୁଡ଼ିକୁ ବୋଇତ ସାହାଯ୍ୟରେ ନେଇ ଦୂରରେ ଥିବା ସିଂହଳ, ଜାଭା, ସୁମାତ୍ରା ଓ ବର୍ମା ଆଦି ଦେଶ ମାନଙ୍କରେ ମହାସମୁଦ୍ରରେ ଜୀବନର ବାଜି ଲଗେଇ ବ୍ୟବସାୟ କରୁଥିଲେ । ତାହା ନିଶ୍ଚୟ ଭାବେ ଆମ ପାଇଁ ଏକ ଗର୍ବର ବିଷୟ । ସେହି ମାନଙ୍କର ସ୍ମୃତିରେ ଆମ ପ୍ରଦେଶର ଲୋକମାନେ ପ୍ରବାହିତ ହେଉଥିବା ନଦୀ କିମ୍ବା ସମୁଦ୍ର ଜଳରେ କଦଳୀ ବାହୁଙ୍ଗାରେ ତିଆରି ଡଙ୍ଗା ଭସାଇବା ଦ୍ୱାରା ପ୍ରଦୂଷଣ ବୃଦ୍ଧିପାଉଛି । ବୋଇତ ଭସାଣୀ ପାଳନ ସମୟରେ ଗାଁର ସ୍ତ୍ରୀମାନେ ହୁଳୁହୁଳି ଦିଅନ୍ତି, ଯାହା ଶ୍ରୁତିକଟୁ ହେଲେ ବି ଏକ ଅଦ୍‌ଭୁତ ଅନୁଭୂତି ଦେଇଥାଏ । ଆଜି ସହରର ସ୍ତ୍ରୀମାନଙ୍କୁ ହୁଳୁହୁଳି ପକାଇବା ଆସୁନାହିଁ, କିମ୍ବା ଏହା ଏକ ରୁଢ଼ୀବାଦୀ ପରମ୍ପରା ବୋଲି ଭାବୁଛନ୍ତି ।

ଶେଷରେ ଆମେ ଏତିକି କହିପାରିବା ଯେ ଓଡ଼ିଶାର ଅସଲ ସାମାଜିକ,କଳା, ଭାଷା ଓ ସେବା ଭାବ ସଂସ୍କୃତିକୁ ଭୁଲିଯାଇ କେବଳ ଆଧାତ୍ମିକ ସଂସ୍କୃତି ନାମରେ ସ୍ୱଳ୍ପ ସମୟ ପାଇଁ ପୂଜା ପାଠ କରିଦେଲେ ଆମର ପ୍ରଗତି ହୋଇପାରିବ ନାହିଁ । ଗଭୀର ଅଧ୍ୟୟନ, କଠୋର ପରିଶ୍ରମ ଓ ସତ୍‌ଚରିତ୍ର ଗଠନ ଦ୍ୱାରା ହିଁ ଆମର ବିକାଶ ହେବ, ଏବଂ ପ୍ରକୃତ ସଂସ୍କୃତି ଯୁଗ ଯୁଗ ଧରି ବଞ୍ଚି ରହିବ ।

#୩୮/୨, ଦ୍ୱିତୀୟ କ୍ରସ୍
ସତ୍ୟସାଇବାବା ଲେ ଆଉଟ୍
ପୋଷ୍ଟ : କେ ଆର୍ ପୁରମ୍
ବେଙ୍ଗାଲୁରୁ, ୫୬୦୦୩୬
ମୋବାଇଲ୍ : ୦୮୦୮୩୨୪୭୭୮
ଇମେଲ୍ : balmikinayak@gmail.com

# ନୂଆ ଠିକଣା !

ସିଲୁ ବେହେରା



ବଦଳେଇ ଦେଲ ଠିକଣା ତୁମର
କାହିଁକି ହେ ପ୍ରିୟା ଆଜ
କେଉଁଆଡେ ଗଲ କେଉଁବାଟେ ଗଲ
ପାଉନି ତୁମକୁ ଖୋଜି -୧

ପଗ୍ଚରିଲି ଯାଇ ଫଗୁଣ କୁ ଦିନେ
ତୁମର ନୂଆ ଠିକଣା
ଫଗୁଣ କହିଲା ତୋ ପ୍ରିୟା ଠିକଣା ତୋତେ ତ ଅଜଣା
ମୋତେ ବା କେମିତି ଜଣା - ୨

ତୁମ ଠିକଣା କୁ ଖୋଜି ଖୋଜି ଆଜ
ମୋ ନିଜ ଠିକଣା ଯାଇଅଛି ହଜି
କେମିତି ଖୋଜିବି କେଉଁଆଡେ ଯିବି
ତୁମ ବିନା ଏକା କେମିତି ବଞ୍ଚିବି - ୩

ତୁମେତ ସାଜିଲ ଆଉ କାହା ମଇନା
ମୋ ସ୍ୱପ୍ନକୁ କରି ଚୁନା
ଆସିବ କି ଫେରି ଆଉ ଥରେ ତୁମେ
ଆମେ ଗଢିବା ନୂଆ ଠିକଣା - ୪

ଅନୁଗୋଳ, ଓଡ଼ିଶା

# ବ୍ରହ୍ମପୁରର ଠାକୁରଣୀ ଯାତ୍ରା




ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ

ମା ବୁଢ଼ୀ ସାଆନ୍ତାଣୀ ଠାକୁରଣୀ ବ୍ରହ୍ମପୁରବାସୀଙ୍କ ଆରାଧ୍ୟା ଦେବୀ ଏବଂ ମା'ଙ୍କ ଛତ୍ରଛାୟାତଳେ ସହରବାସୀ ନଜକୁ ସୁରକ୍ଷିତ ମଣନ୍ତି । ସେଇଥିପାଇଁ ସହରବାସୀଙ୍କ ମା'ଙ୍କ ପ୍ରତ ଅଗାଢ଼ ଭକ୍ତି ଓ ବଶ୍ୱାସ ଦେଖିବାକୁ ମିଳଥାଏ । ଏବଂ ଏହ ଭକ୍ତି ପ୍ରତ ଦୁଇବର୍ଷରେ ଥରେ ଅନୁଷ୍ଠିତ ହେଉଥିବା ଠାକୁରଣୀ ଯାତ୍ରା ସମୟରେ ଅଧିକ ଦେଖିବାକୁ ମିଳେ । ପୁରୁଣା ବ୍ରହ୍ମପୁରରେ ଥିବା ମା'ଙ୍କ ଆସ୍ଥାନରେ ଏକ ପଥରରେ ସିନ୍ଦୁର ଲଗାଇ ପୂଜା କରାଯାଏ । ଇତହାସ ଅନୁଯାୟୀ ଅତୀତରେ ରାଜମହେନ୍ଦ୍ରୀ ଯାଇଥିବା ବେଳେ ମହୁରୀଗଡ଼ ରାଜା ସେଠାକାର ବୁଣାକାର ସମ୍ପ୍ରଦାୟଙ୍କ କାମରେ ଏତେ ପ୍ରସନ୍ନ

ହୋଇଥିଲେ ଯେ ସେ ସେମାନଙ୍କୁ ଓଡ଼ିଶା ଆସି ବସବାସ କରିବା ଏବଂ ବ୍ୟବସାୟ କରିବାପାଇଁ ଅନୁରୋଧ କରିଥିଲେ । ଏହାପରେ ସେହି ସମ୍ପ୍ରଦାୟର କିଛି ଲୋକ ବ୍ରହ୍ମପୁର ଆସି ଘରକରିଥିଲେ । ସେମାନଙ୍କ ସହିତ ସେମାନେ ମା'ଙ୍କୁ ଆଣିଥିବା କଥା ଜଣାପଡ଼େ ।




ସେତେବେଳେ ସେମାନେ ମା'ଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ ଯାହା ଘଞ୍ଚ ଅରଣ୍ୟମଧ୍ୟରେ ଥିଲା । ସମ୍ପ୍ରତି ଦୃତ ସହରୀକରଣ ହେତୁ ସେ ସବୁ ସାହି ଗଳିକନ୍ଦିରେ ପରିବର୍ତ୍ତିତ ହୋଇଗଲାଣି । ଦେଉର ସମ୍ପ୍ରଦାୟର ଲୋକମାନେ ଏହି ଠାକୁରାଣୀଙ୍କ ପୂଜା ପାରମ୍ପରିକ ଭାବରେ କରି ଆସୁଥିଲେ ସୁଦ୍ଧା ବ୍ରହ୍ମପୁର ତଥା ଦକ୍ଷିଣ ଓଡ଼ିଶାର ଅନେକ ଅଞ୍ଚଳର ଲୋକ ମା'ଙ୍କ ଉପରେ ଅଗାଢ଼ ଭକ୍ତି ଦେଖାଇଥାନ୍ତି ।




ପ୍ରତି ଦୁଇବର୍ଷରେ ମା'ଙ୍କର ଯାତ୍ରା ହୁଏ । ଏହା ବ୍ରହ୍ମପୁର ସହରର ମୁଖ୍ୟ ପର୍ବ କହିଲେ ଅତ୍ୟୁକ୍ତି ହେବନାହିଁ । ଏକ ମାସରୁ ଅଧିକ ସମୟ ଧରି ଚାଲୁଥିବା ଏହି ପର୍ବ ଅତି ଆନନ୍ଦ ଉତ୍ସବର ସହକାରେ ପାଳନ ହୁଏ । ଯାତ୍ରା ସମୟରେ ମା ନିଜ ବାପଘରକୁ ଆସନ୍ତି, ଏବଂ ଏହା ଚୈତ୍ରମାସରେ ପାଳନ କରାଯାଏ । ପାରମ୍ପରିକ ଭାବରେ ମା'ଙ୍କ ଘଟକୁ ତାଙ୍କ ବାପା, ଦେଶୀବେହେରାଙ୍କ ଘରକୁ ଅଣାଯାଏ । ଏହି ସମୟରେ ବ୍ରହ୍ମପୁର ସହର ଉତ୍ସବମୁଖର

ହୋଇଉଠେ ।



ଏହି ସମୟରେ ବିଶେଷତଃ ପୁରୁଣା ବ୍ରହ୍ମପୁରର ବିଭିନ୍ନ ସାହି ଓ ଗଳିକନ୍ଦିରେ ବଡ଼ ସୁଦୃଶ ତୋରଣ ସମେତ ମେଢ଼ମାନଙ୍କ ନିର୍ମାଣ କରାଯାଇଥାଏ । ଏଥିରେ ବଞ୍ଜଣା ରଥ ପ୍ରମୁଖ । ବାଟୁଦ୍ଵାରୀ ସାହିର ଏହି ରଥ ଯାତ୍ରା ସମୟରେ ପ୍ରଥମେ ଖୋଲାଯାଏ, ଏବଂ ଏଥିପାଇଁ ପ୍ରତିଦିନ ମା'ଙ୍କ ଘଟକୁ ସହରର ବିଭିନ୍ନ ସାହିରେ ପରିକ୍ରମା କରାଯାଏ । ଯାତ୍ରା ସମୟରେ ଖୋଲାଯାଇଥିବା ଅନେକ ରଥରେ ବିଭିନ୍ନ ପୁରାଣ ଓ ପୁରାତନ ଗ୍ରନ୍ଥମାନଙ୍କରୁ ଚରିତ୍ରମାନଙ୍କୁ



ନେଇ ମେଢ଼ମାନ ତିଆରି କରାଯାଇଥିଲେ, ବିଶେଷତଃ ରାମାୟଣ ଓ ମହାଭାରତର ଚରିତ୍ରମାନଙ୍କୁ ନେଇ ନିର୍ମିତ ମେଢ଼ ଏହି ସମୟରେ ବେଶୀ ଦେଖିବାକୁ ମିଳେ ।

ଯାତ୍ରା ସମୟରେ ଆଉ ଏକ ବିଶେଷ ଆକର୍ଷଣ ହେଉଛି, ବିଭିନ୍ନ ଭକ୍ତଙ୍କ ଦ୍ଵାରା ବେଶହୋଇ ସହରରେ ବୁଲିବାର ଦୃଶ୍ୟ । କୃଷ୍ଣ ସାଇକେଲରେ ଯାଉଥିବା ବେଳେ ଶିବ ମୋଟର ସାଇକେଲରେ ବୁଲିବା ଦେଖିବାକୁ ମିଳେ । ଭକ୍ତମାନେ ନିଜକୁ ବିଭିନ୍ନ ବେଶରେ ସଜ୍ଜିତ କରି ସାହି ଗଳିରେ ବୁଲି ବୁଲି ଲୋକଙ୍କ ଠାରୁ ଅର୍ଥ ସାହାଯ୍ୟ ମାଗିଆଣନ୍ତି ଏବଂ ମା'ଙ୍କ ନିକଟରେ ସେ ସବୁ ଦାନ କରନ୍ତି । ଏହି ସମୟରେ

ହେଉଥିବା ବେଶ ମାନଙ୍କ ମଧରେ ପ୍ରମୁଖ ହେଉଛି ବାଘବେଶ, ପିଲାଖାଇ ଡାହାଣୀ, ରାମଲକ୍ଷ୍ମଣ, ରାଧାକୃଷ୍ଣ, ଶିବପାର୍ବତୀ, ଗଣେଶ, ପାଗଳ, ବଜପୁରର ଲଣ୍ଡାବେଶ, ବୁଦ୍ଧଂଶରଣଂ ବେଶ ଇତ୍ୟାଦ ।

ଏହ ଉତ୍ସବ ସମୟରେ ସମସ୍ତ ସହର ଏକ ମଞ୍ଚପର ମନେହୁଏ । ସହରବାସୀ ନଜର ସମସ୍ତ ସୁଖଦୁଃଖ ମା'ଙ୍କୁ ଜଣାନ୍ତ । ଏବଂ ସହରପାଇଁ ସୁଖ, ସମୃଦ୍ଧି ଓ ଶାନ୍ତର କାମନା କରନ୍ତ ।

ଯାତ୍ରାର ଇତହାସ: -

ବ୍ରହ୍ମପୁରର ମା ବୁଢ଼ୀ ସାଆନ୍ତାଣୀଙ୍କ ଯାତ୍ରା ବଶ୍ୱପ୍ରସିଦ୍ଧ । ଶହ ଶହ ବର୍ଷର ଏହ ସମୃଦ୍ଧ ପରମ୍ପରା । ଐତହାସିକ ମାନଙ୍କ ମତରେ ମା'ଙ୍କ ଆବର୍ଭାବ ହେବାର ଅନେକ ବର୍ଷ ପରେ ଏହ ଯାତ୍ରାର ଆରମ୍ଭ ହୋଇଥିଲା । ପ୍ରଥମେ ଏହ ପରମ୍ପରାକୁ ତେଲୁଗୁ ଭାଷାଭାସୀ ସମ୍ପ୍ରଦାୟର ଲୋକମାନେ ପାଳନ କର ଆସୁଥିବା ବେଳେ ପରେ ପରେ ଏହାର ନୀତନୟମରେ ଅନେକ ପରବର୍ତ୍ତନ ଆସିଛି । ବର୍ତ୍ତମାନ ଏହାକୁ ଭଣ୍ଡାରୀ ଜାତର ଲୋକମାନେ ପୂଜା କରୁଛନ୍ତ । ମିଳୁଥିବା ଐତହାସିକ ବବରଣୀ ଅନୁଯାୟୀ ତନଶହ ବର୍ଷତଳେ ଓଡ଼ିଶାରେ ପ୍ରଚଳତ ଗଡ଼ଜାତ ଶାସନ ବ୍ୟବସ୍ଥାରୁ ଏହ ଯାତ୍ରାର ଆରମ୍ଭ ହୋଇଥିବା ଜଣାପଡ଼େ । ଲଖିତ ବବରଣୀ ଅନୁଯାୟୀ ଅଷ୍ଟାଦଶ ଶତାବ୍ଦୀରେ ଡେରା ସଂପ୍ରଦାୟର ଜଣେ ବ୍ୟକ୍ତି ଏହ ଯାତ୍ରା ଆରମ୍ଭ କରଥିଲେ । ଏହ କଥା ଅନୁସାରେ ଡେରା ସମ୍ପ୍ରଦାୟର ପାତରଲା ପାରେୟା ଦେଶୀବେହେରା ମା'ଙ୍କର ଜଣେ ବଡ଼ ଭକ୍ତ ଥିଲେ, ପ୍ରତଦନ ସକାଳ ଓ ସଂଧ୍ୟାରେ ସେ ମା'ଙ୍କ ଦର୍ଶନ ଅବଶ୍ୟ କରୁଥିଲେ । ଆଗରୁ ମା'ଙ୍କ ମନ୍ଦିର






ଥିବା ସ୍ଥାନରେ ଘଞ୍ଚ ଅରଣ୍ୟ ଥିଲା । ପ୍ରତିଦିନ ମା'ଙ୍କୁ ଦର୍ଶନ କରିବାପାଇଁ ପାରେୟା ଏହି ଜଙ୍ଗଲ ରାସ୍ତାରେ ଯିବା ଆସିବା କରୁଥିବା ବେଳେ ଦିନେ ସନ୍ଧ୍ୟାରେ ସେ ମନ୍ଦିରରୁ ଫେରୁଥିବା ବେଳେ ଜଙ୍ଗଲ ରାସ୍ତାରେ କେହି ଜଣେ କନ୍ୟା କାନ୍ଦୁଥିବାର ଶୁଣିବାକୁ ପାଇଲେ । କନ୍ୟାଟିକୁ ସେ ତା'ପରିଚୟ ପଚାରିବା ପରେ ସେ କୌଣସି ଉତ୍ତର ଦେଇ ପାରୁନଥିଲା । ସନ୍ଧ୍ୟା ଆସୁଥିବା ଦେଖି ପାରେୟା ତାକୁ କହିଲେ, ଅନ୍ଧାର ହେବାକୁ ଆସିଲାଣି, ଚାଲ ଆଜ ଆମ ଘରକୁ ଯିବା । ମୁଁ ତୋ ବାପା ପରି । ଆଜ ରାତି ଆମ ଘରେ ରହିବୁ । କାଲି ସକାଳେ ତୋ ଘର ଖୋଜି ମୁଁ ତୋତେ ଘରେ ନେଇ ଛାଡ଼ିଦେଇ ଆସିବି । ଏହା କହିବା ପରେ କନ୍ୟାଟି କାନ୍ଦ ବନ୍ଦ କରିଦେଇଥିଲା, ହେଲେ ହଠାତ୍ ଅନ୍ତର୍ଦ୍ଧାନ ହୋଇଯାଇଥିଲା । ଏହାପରେ ପାରେୟା ବହୁତ ବିଚଳିତ ହୋଇ କନ୍ୟାଟିକୁ ଅନେକ ଖୋଜା ଖୋଜି କରି ପାଇଲେନାହିଁ, ଏବଂ ନିଜ ଘରକୁ ଫେରି ନିଜ ପତ୍ନୀଙ୍କୁ ସମସ୍ତ ବୃତାନ୍ତ ଜଣାଇଥିଲେ । ସେଇଦିନ ରାତ୍ରୀରେ ମା ଠାକୁରାଣୀ ସ୍ୱପ୍ନରେ ଆସି ପାରେୟାକୁ କହିଥିଲେ ଯେ ସେ ହିଁ ସେହି କନ୍ୟା ରୂପରେ ଆସିଥିଲେ । ଏବଂ ସେ ନିଜକୁ ପାରେୟାର ଝିଅ ବୋଲି ଘୋଷଣା କରିଥିଲେ । ଏବଂ ସେ ଯେହେତୁ ଠାକୁରାଣୀଙ୍କ ବାପା ହେଲେ ତେଣୁ ସେ ବାପାଘରକୁ ଯିବେ ବୋଲି କହିଥିଲେ । ଏହି କଥା ସମ୍ପ୍ରଦାୟର ଲୋକମାନେ ଶୁଣିବାପରେ ମା'ଙ୍କୁ ଘରକୁ ଆଣିବାପାଇଁ ଚିନ୍ତାକଲେ, କିନ୍ତୁ କେମିତି ଅଣାଯିବ ସେ ବିଷୟରେ ସେମାନେ କୌଣସି ନିଷ୍ପତ୍ତି ନେଇପାରିନଥିଲେ । ଏହାପରେ ମା ନିଜେ ସ୍ୱପ୍ନରେ ଆସି ପାରେୟାଙ୍କୁ କହିଥିଲେ ସେ ନିଜେ ହିଁ ନିଜ ଆସିବା ବିଷୟରେ ସୂଚନା ଦେବେ । ଏବଂ ମା'ଙ୍କଠାରୁ ଅନୁମତି ପାଇବା ପରେ ଏହି ଯାତ୍ରାର ଶୁଭାରମ୍ଭ ହୋଇଥିଲା । ସେହି ସମୟରେ ବ୍ରହ୍ମପୁରକୁ ସାତଟି ଅଞ୍ଚଳରେ ବିଭକ୍ତ





କରାଯାଇ ପ୍ରତ୍ୟେକ ଅଞ୍ଚଳପାଇଁ ଜଣେ ଜଣେ ସେନାପତ ନଯୁକ୍ତି କରାଯାଇଥିଲା । ସେମାନଙ୍କ ସହଯୋଗରେ ପ୍ରଥମଥର ଏହ ଯାତ୍ରାର ଆୟୋଜନ ହୋଇଥିଲା ।

ପାରେୟାଙ୍କ ମହାପ୍ରୟାଣ ପରେ ତାଙ୍କ ବଂଶଧର ପି. ଲଙ୍ଗରାଜ ଦେଶୀବେହେରା, ପି. ପୋଲେୟା ଦେଶୀବେହେରା, ପି. ବଶ୍ୱନାଥ ଦେଶୀବେହେରା, ପି. ବାସବରାଜୁ ଦେଶୀବେହେରା ଯାତ୍ରା ପରଚାଳନା କରଆସିଥିଲେ । ବାସବରାଜୁ ନଜ ପୁତ୍ରକୁ ନଜ ଗୋସେଇଁବାପା ପୋଲେୟାଙ୍କ ନାମରେ ନାମକରଣ କରଥିଲେ । ୧୯୦୧ ମସିହାରେ ଜନ୍ମଗ୍ରହଣ କରଥିବା ପୋଲେୟା ଦେଶୀବେହେରା ୧୯୧୭ ମସିହାରୁ ମା'ଙ୍କ ଯାତ୍ରା ପରଚାଳନା କରଥିଲେ । ତାଙ୍କ ସମୟରେ ମା'ଙ୍କ ଘଟକୁ ତାଙ୍କ ଧର୍ମପତ୍ନୀ ପି. ଗୌରୀମହାଲକ୍ଷ୍ମୀ ରାଜମଣି ଆବାହନ କରବା ସହ ମା'ଙ୍କ ଆଜ୍ଞାମାଳକୁ ବହନ କର ଘଟ ପରକ୍ରମା

















କରବା ନୀତ ଆରମ୍ଭ ହୋଇଥିଲ । ପୋଲେୟାଙ୍କ ପରେ ତାଙ୍କର କୌଣସି ପୁତ୍ର ନଥିବାରୁ ତାଙ୍କ ନାତ (ସାନ ଝିଅ ଭ. ଲକ୍ଷ୍ମୀକାନ୍ତାଙ୍କ ଏକମାତ୍ର ପୁତ୍ର) ପି. ଦୁର୍ଗାପ୍ରସାଦଙ୍କୁ ପୁତ୍ରଭବରେ ଗ୍ରହଣ କର ଯାତ୍ରା ପରଚ୍ଳଳନା ଦାୟିତ୍ୱ ଦଆଯାଇଥିଲ । ୧୯୯୫ ମସିହାରେ ପି. ଦୁର୍ଗାପ୍ରସାଦ ଏହ ଯାତ୍ରାକୁ ସୁଚ୍ଳରୂ ରୂପେ ପରଚ୍ଳଳନା କର ଆସୁଛନ୍ତ । ତାଙ୍କର ଧର୍ମପତ୍ନୀ ପି. ଦେବକୀ ମା'ଙ୍କ ଆଜ୍ଞାମାଳ ଓ ଘଟ ବହନ କରୁଥିବା ବେଳେ ଏହ ସମ୍ପ୍ରଦାୟର ଅନ୍ୟ ମହଳାମାନେ ୮ଟି ପାର୍ଶ୍ୱଘଟକୁ ବହନ କର ଆସୁଛନ୍ତ ।

# ସ୍ମୃତି !!!

ପ୍ରତିଭା ପ୍ରିୟଦର୍ଶିନୀ



ମାତ୍ର ଛୋଟ ଗୋଟିଏ ଶବ୍ଦ ସ୍ମୃତି

ସୃଷ୍ଟି ତା'ର ଅତୀତରୁ

ଆସେ ସେ ବିଗତ ଦିନର କଥା ସବୁ ନେଇ

ସେ ଯେ ଗନ୍ତାଘର

କିଛି ଦୁଃଖର କିଛି ସୁଖର

କାହା ପାଇଁ ପୁଣି ଟିକେ ହସର

ଆଉ କାହାପାଇଁ ଟୋପେ ଲୁହର

ସ୍ମୃତି ଆସେ ଏକାନ୍ତରେ, ନିଶବ୍ଦରେ, ନିଶିଥରେ

ଆଉ ଅସମୟରେ

କେବେ ସେ ଭରିଦିଏ ଆଖିରେ ଲୁହ

ପୁଣି କେବେ ଓଠରେ ଟିକେ ହସ

ସ୍ମୃତି ସଖୀ ଏକାନ୍ତର, ନିଃସଙ୍ଗତାର

ତା'ର ଠିକଣା ଅତୀତକୁ ନିଏ

କେବେ କନ୍ଦାଏ କେବେ ଖୁସି ଦେଇଯାଏ...

# କୁନ କୁନ ପିଲାଙ୍କ ପାଇଁ

ରାହୁଲ ପଣ୍ଡା



ପିଲାମାନେ ମୁଁ ତୁମର ରାହୁଲ ଭାଇ ଆଜ ତୁମ ମାନଙ୍କ ପାଖକୁ ନେଇକରି ଆସିଛି ଆମ ଓଡ଼ିଶାର ଜଣେ ମହାନ ସେବକ ତଥା ସ୍ୱାଧୀନତା ସଂଗ୍ରାମୀଙ୍କ ପାଖକୁ, ଯାହାଙ୍କୁ ସଭିଏଁ ଆଦରରେ ନାଁ ଦେଇଥିଲେ ଉତ୍କଳମଣୀ । ସେ ହେଉଛନ୍ତି ପଣ୍ଡିତ ଗୋପବନ୍ଧୁ ଦାସ ।

ଓଡ଼ିଶାର ପୁରୀ ଜିଲ୍ଲା ଅନ୍ତର୍ଭୁକ୍ତ ସୁଆଣ୍ଡୋ ଗ୍ରାମରେ ୧୮୭୭ ମସିହା ଅକ୍ଟୋବର ନଅ ତାରିଖରେ ସେ ପିତା ଦୈତାରୀ ଦାସ ଓ ମାଆ ସ୍ୱର୍ଣ୍ଣମୟୀ ଦେବୀଙ୍କ କୋଳରେ ଜନ୍ମ ନେଇଥିଲେ । ଅଳ୍ପ ବୟସରେ ହିଁ ତାଙ୍କ ମାଆଙ୍କ ଦେହାନ୍ତ ହୋଇଥିଲା । ମାତାଙ୍କ ଅନ୍ତେ ତାଙ୍କ ବିଧବା ପିଉସୀ କମଳାଦେବୀ ତାଙ୍କର ଲାଳନପାଳନ କରିଥିଲେ । ଚାଟଶାଳୀରେ ଶିକ୍ଷା ଲାଭ କରୁଥିବା ଗୋପବନ୍ଧୁ ଅଳ୍ପବୟସରେ ହିଁ ଜଗନ୍ନାଥ ଦାସଙ୍କ ଲିଖିତ ଓଡ଼ିଆ ଭାଗବତକୁ ମୁଖସ୍ତ କରି ମନେ ମନେ ଗାଇବାକୁ ଲାଗିଲେ । ସେତେବେଳେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲା, ତେଣୁ ସେ ଅପର ପ୍ରାଇମେରୀରେ ପଢୁଥିବା ସମୟରେ ତାଙ୍କ ପିତା ଆପ୍ତିଦେବୀ ନାମକ କନ୍ୟା ସହ ତାଙ୍କର ବିବାହ ସଂପର୍ନ୍ନ କରିଥିଲେ । ଗୋପବନ୍ଧୁଙ୍କ ପାଠପଢ଼ାରେ ମନୋନିବେଶ ତାଙ୍କୁ ପୁରୀ ଜିଲ୍ଲା ସ୍କୁଲକୁ ନେଇଗଲା, ସେଠାରେ ସେ ଅଧ୍ୟୟନ କରିଥିଲେ । ସେହି ସ୍କୁଲରେ ପଢୁଥିବା ସମୟରେ ରାମଚନ୍ଦ୍ର ଦାସ ନାମକ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କରେ ଆସି ଦେଶସେବାକୁ ଜୀବନର ବ୍ରତ ଭାବରେ ଗ୍ରହଣ କରିଥିଲେ । ସେତେବେଳେ ପୁରୀଜିଲ୍ଲାରେ ହଇଜାର ପ୍ରକୋପ ଅତିମାତ୍ରାରେ ପ୍ରବଳ ଥିଲା । ଗୋପବନ୍ଧୁ ନିଜ ବନ୍ଧୁମାନଙ୍କୁ ନେଇ 'ପୁରୀ ସେବା ସମିତି' ନାମକ ଏକ ସମିତି ଗଠନ କରି ସହରକୁ ସଂକ୍ରମଣରୁ ରକ୍ଷା କରିଥିଲେ ।

୧୮୯୯ରେ ଗୋପବନ୍ଧୁ ଏଣ୍ଟ୍ରାନ୍ସ ପରୀକ୍ଷା ପାଶ୍ କରିବାପରେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ସେଠାରେ ସେ ଏଫ୍.ଏ. ପଢ଼ିବା ସମୟରେ କର୍ତ୍ତବ୍ୟବୋଧିନୀ ନାମକ ସମିତି ଗଠନ କରିଥିଲେ, ଏହି ସମିତି ମାଧ୍ୟମରେ ତତ୍କାଳୀନ ଓଡ଼ିଶାରେ ହେଉଥିବା ବନ୍ୟା ବିପନ୍ନ ମାନଙ୍କୁ ସେ ସହାୟତା ଯୋଗାଇ ଦେଉଥିଲେ । ସେ କାଳର ଓଡ଼ିଶାରେ ଶିକ୍ଷାର ବିକାଶ ପାଇଁ ସେ 'ଡେକାନ୍ ଏଜୁକେସନ୍' ନାମକ ଶିକ୍ଷା ସଂଗଠନ ଗଢ଼ିଥିଲେ ।

୧୯୦୭ ମସିହାରେ ୨୮ ବର୍ଷ ବୟସରେ କଲକତାରେ ସେ ଆଇନ ବିଷୟରେ କୃତକାର୍ଯ୍ୟ ହେଲେ, କିନ୍ତୁ ସେତେବେଳେ ତାଙ୍କ ପତ୍ନୀଙ୍କ ଦେହାନ୍ତ ହୋଇଥିଲା । ଦେଶ ସେବାରେ ନିଜ ଜୀବନକୁ ନିବୃତ କରିଥିବା ଗୋପବନ୍ଧୁ ପୁନଃବିବାହ କରିନଥିଲେ । ଏହାପରେ ସେ କାଉନସିଲର୍ ଭାବରେ ପୁରୀ ମ୍ୟୁନିସିପାଲଟିରେ ରହି ଅନେକ କାମ କରିଥିଲେ । ୧୯୦୯ ମସିହାରେ ସେ ସତ୍ୟବାଦୀଠାରେ ଏକ ବିଦ୍ୟାଳୟ ସ୍ଥାପନ କଲେ, ତାହା 'ସତ୍ୟବାଦୀ ବନବିଦ୍ୟାଳୟ' ଭାବରେ ପ୍ରସିଦ୍ଧ ହୋଇଥିଲା । ମଧୁବାବୁଙ୍କ ସହାୟତାରେ ସେ ନିର୍ବାଚନ ଲଢ଼ି ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲର ସଭ୍ୟରୂପେ ନିର୍ବାଚିତ ହୋଇ ଓଡ଼ିଶାର ବନ୍ୟା ସମସ୍ୟାର ସ୍ଥାୟୀ ସମାଧାନ ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ଏବଂ ଛିନ୍ନବିଚ୍ଛିନ୍ନ ଓଡ଼ିଶାକୁ ଏକ ଶାସନାଧୀନ କରିବାପାଇଁ ଲାଗିପଡ଼ିଥିଲେ ।

ଗୋପବନ୍ଧୁ 'ସତ୍ୟବାଦୀ' ନାମକ ସାହିତ୍ୟ ପତ୍ରିକା ଓ ସାପ୍ତାହିକ ସମ୍ବାଦପତ୍ର 'ସମାଜ'ର ପ୍ରତିଷ୍ଠାତା ଥିଲେ । ସେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଏବଂ ଅନେକଥର କାରାବରଣ କରିଥିଲେ । ଅନେକ ସାହିତ୍ୟ ପତ୍ରିକା ଓ ପ୍ରବନ୍ଧ ମଧ୍ୟ ସେ ରଚନା କରିଥିଲେ । ତାଙ୍କର ମହତଚିନ୍ତା, ମହତକାର୍ଯ୍ୟ, ସରଳ ଓ ନିରାଡ଼ମ୍ବର ଜୀବନଯାପନ ପାଇଁ ଓଡ଼ିଶାବାସୀ ତାଙ୍କୁ 'ଉତ୍କଳମଣୀ' ଉପାଧିରେ ଭୂଷିତ କରିଥିଲେ । ୧୯୨୮ ମସିହା ଜୁନ ୧୭ ତାରିଖରେ ଏହି ମହାନ ଆତ୍ମାଙ୍କର ଅକାଳ ବିୟୋଗ ଘଟିଥିଲା । ଜୀବନର ଅନ୍ତିମ ପର୍ଯ୍ୟାୟରେ ସେ କହିଯାଇଥିଲେ;

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଗ୍ଲଲି ଯାଆନ୍ତୁ ପିଠିରେ"

ଆମେ ସମସ୍ତେ ଏହି ମହାନ ଆତ୍ମାଙ୍କର ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରିବା ସହ ତାଙ୍କ ପରି ହେବାକୁ ଚେଷ୍ଟା କରିବା ଉଚିତ । ଆଜିପାଇଁ ଏତିକି ପୁଣିଥରେ ଆଗାମୀ ସଂସ୍କରଣରେ ଆସିବି । ରହୁଛି ।

ବ୍ରହ୍ମପୁର

# ଫୁଲମନର ବେଦନା

ପଦ୍ମିନୀ ପ୍ରିୟଦର୍ଶିନୀ ମିଶ୍ର



ବିଶ୍ୱସ୍ରଷ୍ଟାଙ୍କ ଅଦ୍ଭୁତ ଏଇ ସୃଷ୍ଟି । ତାଙ୍କର ସୃଷ୍ଟିରେ ଯେ ଫୁଲ ଏକ ଅନୁପମ ସୃଷ୍ଟି । ଯାହା ବିନା କି ସମଗ୍ର ମଣିଷ ତଥା ଅନ୍ୟ ସବୁ ପ୍ରାଣୀ ଜଗତ ପ୍ରକୃତିର ସୌନ୍ଦର୍ଯ୍ୟକୁ ଉପଭୋଗ କରିପାରେନା, ଯେପରିକି ଫୁଲର ମୁଗ୍ଧଭରା ସୌନ୍ଦର୍ଯ୍ୟ, ମହକ ଭରା ସ୍ପର୍ଶ, ଶିହରଣ ଭରା ପାଖୁଡ଼ା, ପବନର ଗୀତରେ ନୃତ୍ୟରତ ଅଙ୍ଗଭଙ୍ଗୀ, ତା ରଙ୍ଗୀନ ଚେହେରାର ଆକର୍ଷଣ... ଏମିତି କିଛି ଅନୁଭବ... ଯାହା ଅବର୍ଣ୍ଣନୀୟ । ଫୁଲ ବିନା ଏ ସବୁଜ ବନାନୀର ସୁନ୍ଦରତା ଅସମ୍ପୂର୍ଣ୍ଣ ଲାଗେ । ଯେମିତିକି ଜହ୍ନ ବିନା କଇଁ । ସେହିପରି ଫୁଲଟିଏ ଯେ କେତେ ସ୍ୱପ୍ନ ଦେଖିଥାଏ ତା ଆଖିରେ ଆଉ ତା ଆଦ୍ୟ ଅନୁଭବର ସତ୍ତା ପାଏ ଭ୍ରମର ମିଳନର ପ୍ରଥମ ଛୁଆଁରେ ।  ତା ସଦ୍ୟଜାତ ପାଖୁଡ଼ା ଗୁଡ଼ିକ । ଖରାବର୍ଷା ଶୀତ ଶରତ କି ବସନ୍ତ ଋତୁର ପ୍ରେମର ପ୍ରୀତିରେ ତା ହୃଦୟର ସ୍ପନ୍ଦନ... ତା ଟଣା ଆଖିର ଗୁହାଣୀ... ତା ଲାଜକୁଳା ରୂପ ଯେମିତି ତା ସୌନ୍ଦର୍ଯ୍ୟକୁ ଆହୁରି ଦ୍ୱିଗୁଣିତ କରିଦିଏ । ହେଲେ କେଉଁ ଏକ ଅଜଣା ଝଡ଼ରେ ଯଦି ତା'ର ସବୁ ସ୍ୱପ୍ନ ଧୁଳିସାତ୍ ହୋଇଯାଏ, ଆଉ ସେ ଯାହାପାଇଁ  ପ୍ରେମର ନୀଡ଼ ରଚନା କରିଥାଏ ସେ ଯଦି ପ୍ରତାରିତ କରିଦିଏ ତ ଫୁଲର ହୃଦୟକୁ କେତେ ଯେ ଆଘାତ ଲାଗେ.. ତା ମନ କେମିତି ଯେ ସନ୍ତୁଳିତ ହୁଏ ବିରହ ନିଆଁରେ ଜଳି ଜଳି ତାହା ଭରି କଷ୍ଟ ଯନ୍ତ୍ରଣାଦାୟକ । ଏହି ଫୁଲକୁ ନେଇ ଏକ ଛୋଟିଆ କାହାଣୀ, 'ଫୁଲ ମନର ବେଦନା' ।

ଛୋଟିଆ ଫୁଲ ଗଛଟିଏ ଥିଲା । କେତେଦିନ ପରେ ଗଛରେ କଢ଼ିଟିଏ ଆସିଲା । କୋଉଠି ଥିଲା କେଜାଣି ଉଡ଼ି ଉଡ଼ି ଆସିଲା ଶୋଷିଲା ଭଅଁର ଟିଏ ତୃଷା ମେଣ୍ଟାଇବାର ଆଶାରେ । ଭଅଁରଟି ଆସି କଢ଼ି ପାଖରେ ବସିଲା ଏବଂ ତାର କଅଁଳ ହାତର ସ୍ପର୍ଶରେ କଢ଼ି ଦେହରେ ଭରିଦେଲା ଗଭୀର ଉଷ୍ମତା ।

ତାର ମଧୁରତା ଭରା କଣ୍ଠର ଗୁଣୁଗୁଣୁ ସ୍ୱରରେ କଢ଼ର ମନକୁ କିଣିନେଲା । କଢ଼ ଚାରିପାଖେ ଦିନରାତି ଖାଲି ଘୁରିବୁଲିଲା । କଢ଼ର ଛାଇପରି ହୋଇ ତାକୁ ଦିନରାତି ଜଗି ବସିଲା । ଫୁଲ କଢ଼ର ପ୍ରତ୍ୟେକଟି ସୁଖଦୁଃଖ ହାନିଲାଭ, ଭଲମନ୍ଦ ବୁଝୁଥିଲା ସେ । ତା ସହିତ କଥା ହେଉଥିଲା, ତା କଥା ଶୁଣୁଥିଲା, ତା ସହ ହସୁଥିଲା । କଢ଼ ମନରେ ଯେମିତି ହସ ବଦଳରେ ଲୁହ ନ ଆସେ ସେଇଥିପାଇଁ ସବୁବେଳେ ଚେଷ୍ଟା କରୁଥିଲା । ତାର ଗୁଣୁଗୁଣୁ ଗୀତରେ କଢକୁ ପାଗଳ କରିଦେଇଥିଲା ସେ । ସୂର୍ଯ୍ୟଙ୍କର କିରଣ କଢ଼ ଉପରେ ପଡ଼ିଲେ, ତାର ପାଖୁଡ଼ାକୁ କଷ୍ଟ ହେବ ବୋଲି ଭାବି ନିଜ ଡେଣାରେ ଘୋଡ଼େଇ ଦେଉଥିଲା ଏବଂ ପବନରେ କଢ଼ି କାଳେ ଭାଙ୍ଗିପଡ଼ିବ ବୋଲି ଭାବି ପାରୁପର୍ଯ୍ୟନ୍ତ ଜାବୁଡ଼ି ଧରୁଥିଲା । ପ୍ରତି ମୁହୂର୍ତ୍ତରେ କଢ଼ର ପାଖେ ପାଖେ ରହୁଥିଲା । ସମୟ କ୍ରମେ... କଢ଼ର ପାଖୁଡ଼ା ଆସିଲା ଏବଂ ପାଖୁଡ଼ା ମେଲି କଢ଼ଟି ଫୁଲ ହୋଇ ଦିଶିଲା । କଢ଼ ଆଗ ଅପେକ୍ଷା ଅଧିକ ସୁନ୍ଦର ଦିଶୁଥିଲା । କଢ଼ପ୍ରତି ଥିବା ସ୍ନେହ ଭଅଁର ସେମିତି ଥିଲା, ସେ ସେମିତି ଫୁଲକୁ ଜଗି ରହିଥିଲା । ଫୁଲ ଓ ଭଅଁରର ବନ୍ଧନ ଦିନକୁ ଦିନ ନିବିଡ଼ ହୋଇଯାଇଥିଲା । ଅବସ୍ଥା ଏମିତି ହେଲା ଯେ, ଜଣେ ଅନ୍ୟ ଜଣଙ୍କୁ ଛାଡ଼ି ରହିବା ଅସମ୍ଭବ ବୋଲି ଜଣାପଡୁଥିଲା । ଭଅଁରର କୋମଳ ହାତର ସ୍ପର୍ଶ ତା କଅଁଳ ପାଖୁଡ଼ାକୁ ଛୁଇଁବା ଦିନଠାରୁ ଫୁଲ ପ୍ରତି ମୁହୂର୍ତ୍ତକୁ ଉପଭୋଗ କରୁଥିଲା ଏକ ରୋମାଞ୍ଚକର ଶୀତଳତାର ଅନୁଭବକୁ ।

ହେଲେ ସୁଖର ସମୟ ଯେ ଅଳ୍ପଦିନ ପାଇଁ ସେ କଥା ଫୁଲ ଭୁଲି ଯାଇଥିଲା । ଫୁଲର ଅନ୍ତରରେ ଥିବା ସମସ୍ତ ମଧୁକୁ ଭଅଁର ମନଭରି ଶୋଷି ପିଇଦେବାପରେ ଉଠିଲା । ତାର ଅନେକ ଦିନର ତୃଷ୍ଣା ଆଜି ମେଣ୍ଟିଯାଇଥିଲା, ହେଲେ ଫୁଲ ତାକୁ ଛାଡ଼ି ରହିପାରୁନଥିଲା । ସେ ଚାହୁଁଥିଲା ଭଅଁରର ଚୁମ୍ବନକୁ ଆହୁରି ଗଭୀରଭାବରେ ଅନୁଭବ କରିବାକୁ । କିନ୍ତୁ ଭଅଁରର ତୃଷ୍ଣା ସମାପ୍ତ ହୋଇସାରିଥିଲା । ସେ ଯିବାକୁ ବାହାରିଲା । ଫୁଲ ଅନୁନୟ ହୋଇ ପଚାରିଲା, 'କୁଆଡ଼େ ଯାଉଛ ? ଆଉ କିଛି ସମୟ ରୁହନା ମୋ ପାଖରେ । ତୁମେ ମୋତେ କେମିତି ଛାଡ଼ିଦେଇ ଚାଲିଯିବ ବୋଲି ବାହାରିଛ ? ତୁମକୁ ଟିକେ କଷ୍ଟ ଲାଗୁନି ? ଆମ ଭଲପାଇବାକୁ ଭୁଲି ଯାଉଛ ?'

ଭଅଁର ପ୍ରସ୍ତୁତ ହୋଇସାରିଥିଲା ପୁଣି ଏକ ନୁତନ ଫୁଲର ସନ୍ଧାନରେ, ପୁଣି ମଧୁପାନ ପାଇଁ । ଭଅଁର ଡେଣା ଝାଡ଼ି ଉଡ଼ିଯିବା ବେଳକୁ କଟାକ୍ଷଭରା ଚାହାଣୀରେ ଚାହୁଁଥିଲା ଫୁଲକୁ । ଫୁଲକୁ ସେ

ଗୃହାଣୀରେ ପ୍ରେମ ଦେଖାଯାଇନଥିଲା । ସେ ଭାରୀ କଷ୍ଟ ପାଉଥିଲା । ଭଅଁର ନିର୍ବିକାର ଭାବରେ କହୁଥିଲା, 'ତୁ ଥା, ମୁଁ ଏବେ ଯାଉଛି । ପୁଣି ଗୋଟିଏ କଅଁଳ ଫୁଲ ପାଖକୁ, ପୁଣି ମଧୁପାନ କରିବାକୁ ।' ଫୁଲର ନିଜ ଉପରେ ବିଶ୍ୱାସ ହେଉନଥିଲା । ଏ ସେଇ ଭଅଁର ଯିଏ ମୋତେ ନେଇ ଏତେ ସ୍ୱପ୍ନ ଦେଖାଇଥିଲା, ଆଜି ମୋ ମଧୁ ପିଇଦେବାପରେ ସାହାସ ପାଇ ପୁଣି ଗୋଟିଏ ନୂଆ ଫୁଲ ସନ୍ଧାନରେ ବାହାରିଛି । ସେ ଅନୁନୟ ହେଉଥିଲା ଆଉ କହୁଥିଲା, 'ତୁମେ ଏ ସବୁ କଣ ପ୍ରଳାପ କରୁଛ ? ତମେ ଜାଣିଛ ? ମୁଁ ତୁମ ବିନା ବଞ୍ଚିପାରିବିନି । ତୁମ ବିନା ମୋ ଅସ୍ତିତ୍ୱ ନାହିଁ । ମୋର ସର୍ବସ୍ୱ ଲୁଟିନେବାପରେ ତୁମେ କହୁଛ କଣ ? ଏତେ ଦିନଧରି ଯାହା ଥିଲା ସେ ସବୁ କଣ ମିଥ୍ୟା ? ମୋତେ ଲୁଣ୍ଠିତ କରିଦେଇ ଚାଲିଯିବ ? ମୋର କଣ କିଛି ଅସ୍ତିତ୍ୱ ନାହିଁ ?'

ଭଅଁର ବିକଟାଳ ହସ ଦେଇ କହିଲା, 'ତୁ ମିଛଟାରେ ପାଗଳ ପରି ହୁଅନା । ତୁ କି ଜାଣିନୁ ଏହା ମୋର ଜନ୍ମଗତ ପ୍ରବୃତ୍ତି । ତା ଛଡ଼ା ତୋ ପାଖରେ ଆଉ କଣ ଅଛି ? ତୁ କଣ ଦେଇ ମୋତେ ତୋ ପ୍ରତି ଆକର୍ଷିତ କରିରଖିବୁ ? ନିଜକୁ ଭଲ ଭାବରେ ଦେଖ୍, ତୋର ଆଉ ପୂର୍ବପରି ସୌନ୍ଦର୍ଯ୍ୟ ନାହିଁ କି ତୋ ଦେହରେ ଚମକ ନାହିଁ, ଉଜ୍ଜ୍ୱଳତା ନାହିଁ । ତୋ କଅଁଳ ପାଖୁଡ଼ା ସବୁ ଝଡ଼ିବାକୁ ଲାଗିଲାଣି । ତୋ ଅନ୍ତରରେ ଆଉ ମଧୁଝରୁନାହିଁ । ତୋ ଦେହରେ ଆଉ କୋମଳତା ନାହିଁ । ଆଉ କାହିଁକି ମୁଁ ତୋ ପାଖରେ ଆଜୀବନ ବାନ୍ଧି ହୋଇ ରହିବି ? ମୁଁ ଭଅଁର ମଧୁବିନା ମୋର ବଞ୍ଚିବା ଅସମ୍ଭବ । ମୋତେ ଦରକାର ମଧୁ, ସେଇଥିପାଇଁ ନୂଆ ନୂଆ ଫୁଲ ସନ୍ଧାନରେ ମୁଁ ଥାଏ । ତୁ କଣ ଏତିକି ଜାଣିନୁ ? ଯେତେଦିନ ତୋ ଦେହରେ ମଧୁଥିବ ମୁଁ ତୋ ପାଖରେ ଥିବି, ହେଲେ ମଧୁ ସରିବାପରେ ? ତୁ ଏମିତି ପଡ଼ି ରହିବୁ ନିଜ ଶେଷର ଅପେକ୍ଷାରେ ଆଉ ମୁଁ ପୁଣି ଖୋଜି ବୁଲିବି ଏକ ନୂଆ ଫୁଲ ।'

ଫୁଲ କିଛି କହିବା ଭଳି ଅବସ୍ଥାରେ ନଥାଏ, କଟାକ୍ଷ କରି ହସି ଦେଇ ଭଅଁର ଚାଲିଯାଏ, ଦୂରରୁ ଦୁରକୁ । ଫୁଲ ଅପେକ୍ଷା କରିଥାଏ ନିଜର ଶେଷକୁ । ମନେ ମନେ ଭାବୁଥାଏ କହିବ କାହାକୁ ନିଜ ମନର ବେଦନା କହିବାକୁ ....

ବ୍ରହ୍ମପୁର
ଇମେଲ୍ : payal.likan@gmail.com

# ଜନ୍ମତାରିଖରୁ ବ୍ୟକ୍ତିତ୍ୱ ଜାଣନ୍ତୁ !

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ



ଚୀନର ପ୍ରଚଳିତ ଜ୍ୟୋତିଷଶାସ୍ତ୍ର ଅନୁସାରେ ବିଭିନ୍ନ ଦିନରେ ଜନ୍ମ ହୋଇଥିବା ବ୍ୟକ୍ତିମାନଙ୍କୁ ବିଭିନ୍ନ ପ୍ରାଣୀ ମାନଙ୍କର ସଙ୍କେତିକ ନାମ ଦିଆଯାଇଥାଏ ଏବଂ ସେହି ପ୍ରାଣୀମାନଙ୍କ ଅନୁସାରେ ବ୍ୟକ୍ତିର ବ୍ୟକ୍ତିତ୍ୱ ବିଷୟରେ ବିଶେଷ ସୂଚନା ମିଳିଥାଏ । ଆସନ୍ତୁ ଜାଣିବେ ଆପଣଙ୍କ ଜନ୍ମ ତାରିଖ ଆପଣଙ୍କ ବ୍ୟକ୍ତିତ୍ୱ ବିଷୟରେ କିଣ ସୂଚନା ଦେଉଛି । ସାଙ୍କେତିକ ଭାବରେ ଆମେ ବିଭିନ୍ନ ପ୍ରାଣୀଙ୍କ ନାମ ବ୍ୟବହାର କରୁଛୁ, ଯଥା ଶ୍ୱାନ, ବିରାଡ଼ି, ମର୍କଟ ଇତ୍ୟାଦି ଏ ସବୁ ନାମକରଣ କେବଳ ସୂଚନାପାଇଁ, ଏହା ଦ୍ୱାରା ଯଦି ଆପଣଙ୍କ ଧାରଣାକୁ ବାଧା ଆସୁଥାଏ, ତେବେ ଆମେ କ୍ଷମାପ୍ରାର୍ଥୀ ।

| | | |
|---|---|---|
| ଜାନୁଆରୀ | ୧ - ୯ | ଶ୍ୱାନ |
| ଜାନୁଆରୀ | ୧୦ - ୨୪ | ମୂଷିକ |
| ଜାନୁଆରୀ | ୨୫ - ୩୧ | ସିଂହ |
| ଫେବୃଆରୀ | ୧ - ୫ | ବିରାଡ଼ି |
| ଫେବୃଆରୀ | ୬ - ୧୪ | କପୋତ |
| ଫେବୃଆରୀ | ୧୫ - ୨୧ | କଇଁଛ |
| ଫେବୃଆରୀ | ୨୨ - ୨୮ | ଚିତାବାଘ |
| ମାର୍ଚ୍ଚ | ୧ - ୧୨ | ମାଙ୍କଡ଼ |
| ମାର୍ଚ୍ଚ | ୧୩ - ୧୫ | ସିଂହ |
| ମାର୍ଚ୍ଚ | ୧୬ - ୨୩ | ମୂଷିକ |
| ମାର୍ଚ୍ଚ | ୨୪ - ୩୧ | ବିରାଡ଼ି |
| ଅପ୍ରେଲ | ୧ - ୩ | ଶ୍ୱାନ |
| ଅପ୍ରେଲ | ୪ - ୧୪ | ଚିତାବାଘ |
| ଅପ୍ରେଲ | ୧୫ - ୨୬ | ମୂଷିକ |
| ଅପ୍ରେଲ | ୨୭ - ୩୦ | କଇଁଛ |
| ମଇ | ୧ - ୧୩ | ମାଙ୍କଡ଼ |

| | | |
|---|---|---|
| ମଇ | ୧୪ - ୨୧ | କପୋତ |
| ମଇ | ୨୨ - ୩୧ | ସିଂହ |
| ଜୁନ୍ | ୧ - ୩ | ମୁଷିକ |
| ଜୁନ୍ | ୪ - ୧୪ | କଇଁଛ |
| ଜୁନ୍ | ୧୫ - ୨୦ | ଶ୍ୱାନ |
| ଜୁନ୍ | ୨୧ - ୨୪ | ମାଙ୍କଡ଼ |
| ଜୁନ୍ | ୨୫ - ୩୦ | ବଗଡ଼ି |
| ଜୁଲାଇ | ୧ - ୯ | ମୁଷିକ |
| ଜୁଲାଇ | ୧୦ - ୧୫ | ଶ୍ୱାନ |
| ଜୁଲାଇ | ୧୬ - ୨୬ | କପୋତ |
| ଜୁଲାଇ | ୨୭ - ୩୧ | ବଗଡ଼ି |
| ଅଗଷ୍ଟ | ୧ - ୧୫ | ସିଂହ |
| ଅଗଷ୍ଟ | ୧୬ - ୨୫ | ମୁଷିକ |
| ଅଗଷ୍ଟ | ୨୬ - ୩୧ | କଇଁଛ |
| ସେପ୍ଟେମ୍ବର | ୧ - ୧୪ | କପୋତ |
| ସେପ୍ଟେମ୍ବର | ୧୫ - ୨୭ | ବଗଡ଼ି |
| ସେପ୍ଟେମ୍ବର | ୨୮ - ୩୦ | ଶ୍ୱାନ |
| ଅକ୍ଟୋବର | ୧ - ୧୫ | ମାଙ୍କଡ଼ |
| ଅକ୍ଟୋବର | ୧୬ - ୨୭ | କଇଁଛ |
| ଅକ୍ଟୋବର | ୨୮ - ୩୧ | ଚିତାବାଘ |
| ନଭେମ୍ବର | ୧ - ୧୬ | ସିଂହ |
| ନଭେମ୍ବର | ୧୭ - ୩୦ | ବଗଡ଼ି |
| ଡିସେମ୍ବର | ୧ - ୧୬ | ଶ୍ୱାନ |
| ଡିସେମ୍ବର | ୧୭ - ୨୫ | ମାଙ୍କଡ଼ |
| ଡିସେମ୍ବର | ୨୬ - ୩୧ | କପୋତ |

ବର୍ତ୍ତମାନ ନିଜ ଜନ୍ମତାରିଖରେ ଦିଆଯାଇଥିବା ପ୍ରାଣୀ ଅନୁସାରେ ବ୍ୟକ୍ତିତ୍ୱ ଦେଖନ୍ତୁ ।

### ଶ୍ୱାନ

ଆପଣ ଅତ୍ୟନ୍ତ ବିଶ୍ୱାସୀ ଏବଂ ମିଷ୍ଟଭାଷୀ ବ୍ୟକ୍ତି । ଆପଣଙ୍କ ଚରିତ୍ରକୁ କେବେ ବି ସନ୍ଦେହ କରିହେବ ନାହିଁ । କର୍ମକ୍ଷେତ୍ରରେ ଆପଣ ଅତ୍ୟନ୍ତ ଭଦ୍ର, ଏବଂ ବିଶ୍ୱାସଯୋଗ୍ୟ । ଆପଣ ଅତି ସାଧାସିଧା ବ୍ୟକ୍ତି । ଆପଣ କୌଣସି ଅଯଥା

ଝିଞ୍ଜଟରେ ପଡ଼ନ୍ତି ନାହିଁ, ବିନୟପୂର୍ଣ୍ଣ ଏବଂ ସଚ୍ଚୋଟ ବ୍ୟକ୍ତି । ସେଇଥିପାଇଁ ଆପଣଙ୍କ ବନ୍ଧୁମାନେ ଆପଣଙ୍କୁ କେବେ ବି ଛାଡ଼ିବେ ନାହିଁ । ଆପଣ ପୋଷାକପରିପାଟୀ ପାଇଁ ବ୍ୟାକୁଳ । ଯଦି ଆପଣଙ୍କ ପାଖରେ ଆଧୁନିକ ଏବଂ ନୁତନ ଡିଜାଇନର ପୋଷାକ ନଥାଏ, ତେବେ ଆପଣ ବିଷାଦଗ୍ରସ୍ତ ହୋଇପାରନ୍ତି । ଆପଣ ବହୁତ ମେଳାପୀ ଏବଂ ଲୋକପ୍ରିୟ ହୋଇପାରନ୍ତି । ଆପଣଙ୍କ ବନ୍ଧୁଙ୍କ ସଂଖ୍ୟା କମ୍ ହୋଇପାରେ କିନ୍ତୁ ପ୍ରତ୍ୟେକ ବନ୍ଧୁ ଜଣେ ଜଣେ ପରିକ୍ଷିତ ଏବଂ ଉତ୍ତମ ବନ୍ଧୁ ହୋଇଥାନ୍ତି ।

## ମୂଷିକ

ଆପଣ ସର୍ବଦା କୌଣସି ନା କୌଣସି ସୈତାନୀ କାରନାମା କରିବାରେ ବ୍ୟସ୍ତ । ଆପଣଙ୍କ ଦୁଷ୍ଟାମୀ ଆପଣଙ୍କ ଆଖିରେ ଦେଖାଯାଏ ଏବଂ ସେଇଥିପାଇଁ ଅନେକ ଆପଣଙ୍କ ପ୍ରତି ଆକର୍ଷିତ ହୁଅନ୍ତି ମଧ୍ୟ ।ଆପଣ ଜଣେ ଅତ୍ୟନ୍ତ କୌତୁହଳ ପ୍ରିୟ ବ୍ୟକ୍ତି । ସେଇଥିପାଇଁ ଆପଣଙ୍କୁ ବନ୍ଧୁମାନେ ସବୁବେଳେ ଖୋଜନ୍ତି ଏବଂ ବିଭିନ୍ନ ସଭାସମିତି ଏବଂ କାର୍ଯ୍ୟକ୍ରମମାନଙ୍କରେ ଆପଣଙ୍କ ଗୁହିଦା ବଢ଼ିଯାଏ । କିନ୍ତୁ ଆପଣ ବେଳେ ବେଳେ ସଂବେଦନଶୀଳ ହୋଇପଡ଼ନ୍ତି । ସେଇଥିପାଇଁ ଆପଣଙ୍କ ସହ ବାର୍ତ୍ତାଳାପ କଲାବେଳେ ବନ୍ଧୁମାନଙ୍କୁ ଅନେକ ସମୟ ଚିନ୍ତାକରି କଥାବାର୍ତ୍ତା କରିବାକୁ ହୁଏ । ଯଦି କୌଣସି ବ୍ୟକ୍ତି ଆପଣଙ୍କ ସହ ବାଗ୍ବିଳାମୀ କରେ କିମ୍ବା ଶବ୍ଦବିନିମୟ କରେ ତେବେ ସେ ଆପଣଙ୍କ ଆକ୍ରୋଶର ଶୀକାର ହେବା ସୁନିଶ୍ଚିତ । ଏହାପରେ କେବଳ ଭଗବାନ ହିଁ ତାକୁ ରକ୍ଷା କରିବେ ।

## ସିଂହ

ଆପଣଙ୍କ ନାମର ଠିକ୍ ବିପରୀତ ଆପଣ ଜଣେ ଶାନ୍ତିପ୍ରିୟ ବ୍ୟକ୍ତି । ଆପଣ କଳହଠାରୁ ଯଥାସମ୍ଭବ ଦୂରରେ ରହିବାକୁ ସବୁବେଳେ ଭଲ ପାଆନ୍ତି । ଆପଣ ଅତ୍ୟନ୍ତ ଭ୍ରମଣ ପ୍ରିୟ ଏବଂ କୌଣସି ଗୋଟିଏ ସ୍ଥାନରେ ଅଧିକ ସମୟ ବସି ରହିବାକୁ ଘୃଣା କରନ୍ତି । ଆପଣ ବହୁତ ମେଳାପୀ ଏବଂ ଲୋକପ୍ରିୟ ବ୍ୟକ୍ତି । ଆପଣ ପ୍ରେମକରିବାରେ ଅତ୍ୟନ୍ତ ନିପୁଣ । ଆପଣ ନିଜ ଜୀବନସାଥୀଙ୍କ ପ୍ରତି ଅତ୍ୟନ୍ତ ବିଶ୍ୱାସୀ ଏବଂ ସଚ୍ଚୋଟ ରହନ୍ତି । ନେତୃତ୍ୱ ନେବା ପାଇଁ ହିଁ ଆପଣଙ୍କ ଜନ୍ମ । ଲୋକଙ୍କ ପାଖରୁ କାମ କେମିତି ହାସିଲ କରାଯାଇପାରେ ତାହା ଆପଣ ସଠିକ୍ ଜାଣନ୍ତି । ଲୋକମାନେ ଆପଣଙ୍କ ସ୍ନେହୀ ଗୁଣକୁ ଭଲ ପାଆନ୍ତି । ଆପଣ ଅନ୍ୟର ଭଲପାଇବାକୁ ଭଲ ପାଆନ୍ତି । ଆପଣଙ୍କୁ ସ୍ନେହଦ୍ୱାରା କିଣି ହୋଇପାରିବ ।

## ବିରାଡ଼ି

ଆପଣ ଅତ୍ୟନ୍ତ ଭଦ୍ର, ଭାବୁକ, ଲୋକପ୍ରିୟ ଓ ପ୍ରେମଯୋଗ୍ୟ ବ୍ୟକ୍ତିତ୍ୱ । ଆପଣ ବେଳେ ବେଳେ ଲାଜକୁଳା ସ୍ୱଭାବର ହୋଇପାରନ୍ତି ଏବଂ ଆପଣଙ୍କ ତୀକ୍ଷ୍ଣ ଚତୁରତା ସମସ୍ତଙ୍କୁ ଭଲଲାଗେ । ଆପଣ ଅତ୍ୟନ୍ତ ରମଣପ୍ରିୟ । ଆପଣଙ୍କ ଜୀବନସାଥୀ ବାସ୍ତବିକ ଭାଗ୍ୟବାନ/ଭାଗ୍ୟବତୀ ହୋଇଥିବେ । ଆପଣ ଆଜୀବନ ନିଜ ଜୀବନସାଥୀ ପ୍ରତି

ସଚ୍ଚୋଟ ରହିବେ ।

ଆପଣ ଅଧିକାଂଶ ସମୟ ଏକାନ୍ତରେ ରହିବାକୁ ଭଲ ପାଆନ୍ତି । ବିଭିନ୍ନ ଜିନିଷର ଗଭୀରତମ ଗବେଷଣା କରି ତତ୍ତ୍ୱ ଜାଣିବାରେ ଆପଣଙ୍କ ଇଚ୍ଛା ପ୍ରବଳ । ଆପଣ ସଚ୍ଚୋଟ ଏବଂ ବିଶ୍ୱାସଯୋଗ୍ୟ ରହନ୍ତି ଏବଂ ନିଜ ଜୀବନସାଥୀଠାରୁ ସମାନ ସଚ୍ଚୋଟତା ଆଶା କରନ୍ତି । ଆପଣ ଆଜୀବନ ସାହାସପୂର୍ଣ୍ଣ, ସାମର୍ଥ୍ୟବାନ ଏବଂ ଶକ୍ତିବାନ ରହନ୍ତି ।

ସାଧାରଣତଃ ଆପଣ ଥଣ୍ଡା ମିଜାଜର ଲୋକ କିନ୍ତୁ ଆପଣଙ୍କୁ କେହି ଆଘାତ ଦେଲେ ଆପଣ କ୍ରୋଧ ଉଦ୍‌ଗୀରଣ କରନ୍ତି । ଆପଣ ଅତ୍ୟନ୍ତ ବସନପ୍ରିୟ ।

ଲୋକମାନେ ଫେସନ୍ ଦୃଷ୍ଟିରୁ ଆପଣଙ୍କୁ ନିଜର ଆଇଡ୍‌ଲ୍ / ଆଇକନ୍ ( ଉଦାହରଣ ) ବୋଲି ଚିନ୍ତାକରନ୍ତି । ଆପଣ ସମସ୍ତଙ୍କ ସହ ସହଜରେ ମିଶିଯାଆନ୍ତି, କିନ୍ତୁ ଅପରିଚିତଙ୍କ ସହ କଥାବାର୍ତ୍ତା ହୋଇପାରନ୍ତି ନାହିଁ ।

ଆପଣଙ୍କ ସହ ଲୋକମାନେ ବହୁତ ଖୁସି ଅନୁଭବ କରନ୍ତି । ଆପଣ ବହୁତ ଭାବିଚିନ୍ତି ବନ୍ଧୁତ୍ୱ କରନ୍ତି ।

## କଇଁଛ

ଆପଣ ନିଜକୁ ସର୍ବଶ୍ରେଷ୍ଠ ଏବଂ ସହୃଦୟ ବୋଲି ଜାଣନ୍ତି । ଆପଣଙ୍କ ଦୟାଶୀଳତାର ବ୍ୟାଖ୍ୟା ସମସ୍ତେ କରନ୍ତି । ଆପଣ ସମସ୍ତଙ୍କୁ ଭଲ ପାଆନ୍ତି । ଲୋକମାନେ ଭୁଲ କଲେ ବି ଆପଣ ସେମାନଙ୍କୁ କୌଣସି ପ୍ରକାର ଆକ୍ଷେପ କରନ୍ତି ନାହିଁ । ସେଇଥିପାଇଁ ଆପଣଙ୍କୁ ଲୋକମାନେ ଭଲପାଆନ୍ତି । ଆପଣ କାହାର ଦୋଷଖୁଣ ପଛରେ ଚର୍ଚ୍ଚା କରନ୍ତି ନାହିଁ, ଏବଂ ଲୋକମାନଙ୍କୁ ସ୍ନେହ ଓ ସମ୍ମାନ ଦିଅନ୍ତି । ଆପଣ ଲୋକଙ୍କୁ ସ୍ନେହ ବାଣ୍ଟିବାରେ ଖୁସି ପାଆନ୍ତି କିନ୍ତୁ କେବେ ପ୍ରତିଦାନରେ କିଛି ଆଶା କରନ୍ତି ନାହିଁ । ଆପଣ ଅତ୍ୟନ୍ତ ଦୟାଶୀଳ । ଆପଣ ପ୍ରତ୍ୟେକ ଘଟଣାକୁ ପ୍ରୟୋଗାତ୍ମକ / ବ୍ୟବହାରିକ ଦୃଷ୍ଟିକୋଣରୁ ଦେଖନ୍ତି ।

## କପୋତ

ଆପଣ ଜଣେ ସବୁବେଳେ ଖୁସିରେ ବଞ୍ଚୁଥିବା ମନୁଷ୍ୟ । ପରିବେଶ କେମିତି ବି ହେଉ ଖୁସି କିମ୍ବା ଦୁଃଖର, ଆପଣଙ୍କ ଉପରେ କୌଣସି ପ୍ରଭାବ ପକାଏ ନାହିଁ । ଆପଣ ଯେଉଁଠିକି ବି ଯାଆନ୍ତି କେବଳ ଖୁସି ବାଣ୍ଟନ୍ତି । ଆପଣ ନିଜ ବନ୍ଧୁମାନଙ୍କ ଭିତରେ ନେତା ଭଳି ସମ୍ମାନ ପାଆନ୍ତି । ଆବଶ୍ୟକ ସମୟରେ ଆପଣ ଲୋକଙ୍କ ସୁଖଦୁଃଖରେ ଠିଆ ହୁଅନ୍ତି ଏବଂ ସେମାନଙ୍କୁ ସମ୍ଭାଳିପାରନ୍ତି । ଆପଣ ମିଥ୍ୟାବାଦିତାକୁ ଘୃଣା କରନ୍ତି । ଏବଂ ମିଥ୍ୟାରଚନା କରୁଥିବା ଲୋକମାନଙ୍କଠାରୁ ଯଥାସମ୍ଭବ ଦୂରରେ ରହନ୍ତି । ଆପଣ ପ୍ରତ୍ୟେକ କାର୍ଯ୍ୟକୁ ସଠିକ ଭାବରେ କରିବାରେ ବିଶ୍ୱାସ କରନ୍ତି । ଆପଣ ସହଜରେ ପ୍ରେମରେ ପଡ଼ିପାରନ୍ତି ।

### ଚିତାବାଘ

ଆପଣ ଅତ୍ୟନ୍ତ ସନ୍ଦେହସ୍ୱଦ ବ୍ୟକ୍ତି । ଆପଣ ମାନସିକ ଗ୍ଚପ ସହଜରେ ନେଇ ପାରନ୍ତି । ଯେକୌଣସି ପ୍ରକାରର ପରିସ୍ଥିତିକୁ ସମ୍ମୁଖୀନ ହେବାର ଧୈର୍ଯ୍ୟ ଆପଣଙ୍କ ପାଖରେ ଥାଏ । ବେଳେ ବେଳେ ଆପଣ ବହୁତ ସ୍ୱେଚ୍ଛାପର ପରି ବ୍ୟବହାର କରନ୍ତି, ଏବଂ ଆପଣ ନିଜ ବିଶେଷ ଗୋଷ୍ଠୀ ବନ୍ଧୁମାନଙ୍କ ସହ ଅନ୍ୟର କୁତ୍ସାରଟନା କରିବା ସହ ଗପସପ କରିବାରେ ବ୍ୟସ୍ତ ରହନ୍ତି । ଆପଣ ସବୁ ଜିନିଷ ଓ ଘଟଣା କେବଳ ନିଜ ହିସାବରେ ହେଉ ବୋଲି ଚାହାନ୍ତି, ଯାହା ବେଳେ ବେଳେ ସମ୍ଭବ ହୁଏନାହିଁ ।  ସେଇଥିପାଇଁ ଆପଣ ବେଳେ ବେଳେ ସମ୍ବନ୍ଧ ଭାଙ୍ଗିପକାନ୍ତି । ତଥାପି ଆପଣ ଲୋକମାନଙ୍କୁ ସାହାଯ୍ୟ କରିବାକୁ ପଛାନ୍ତି ନାହିଁ ।

### ମାଙ୍କଡ଼

ଆପଣ ଅତ୍ୟନ୍ତ ଅଧୈର୍ଯ୍ୟ ଏବଂ ଅତିଶୟ ବିଚଳିତ ହେଉଥିବା ଭଳି ବ୍ୟକ୍ତି । ଆପଣ ଚାହାନ୍ତି ସବୁ କିଛି ଯେତେ ପାରୁ ଶୀଘ୍ର ହୋଇଯାଉ । ହୃଦୟରେ ଆପଣ ଅତ୍ୟନ୍ତ ସାଧାସିଧା ଅଟନ୍ତି ଏବଂ ସମସ୍ତେ ଆପଣଙ୍କୁ ସମ୍ମାନ ଦେଉଥିଲେ ହିଁ ଆପଣ ଖୁସି ହୁଅନ୍ତି । ଆପଣ କୌଣସି ପ୍ରକାର ଘଟଣା ବା କଳହଠାରେ ସୁରକ୍ଷିତ ଦୂରତାରେ ରହନ୍ତି ।  ଯଦି କୌଣସି ଘଟଣା ବା କଳହରେ ଆପଣଙ୍କ ନାଁ ଉଠେ ବା ନିଆଯାଏ ତେବେ ଆପଣ ଚିନ୍ତାଗ୍ରସ୍ତ ହୋଇପଡ଼ନ୍ତି । ସେଇଥିପାଇଁ ଆପଣ ସବୁବେଳେ ସୁରକ୍ଷିତ ରହିବାକୁ ଉଚିତ ମନେ କରନ୍ତି । ଆପଣଙ୍କ ଷଷ୍ଠ ଇନ୍ଦ୍ରୀୟ ବହୁତ କାମକରେ ଏବଂ ଆପଣ ସବୁବେଳେ ସେଇଥିପାଇଁ ବିବାଦରୁ ଦୂରରେ ରହନ୍ତି । ଆପଣ ଅର୍ଥଚିନ୍ତା ବହୁତ କରନ୍ତି ।

ବୀମାନଗର, ୨ୟ ଗଳି, ବ୍ରହ୍ମପୁର
ଫୋନ୍ : ୯୦୪୦୯୮୫୪୬୩
ଇ-ମେଲ୍ : aahwaan@gmail.com

[ ଇଣ୍ଟରନେଟ୍‌ରେ ଉପଲବ୍‌ଧ ସୂଚନାକୁ ଓଡ଼ିଆ ଭାଷାନ୍ତରଣ କରି ଉପସ୍ଥାପନ କରାଯାଇଛି, ଏହାର ସତ୍ୟତା ବିଷୟରେ କୌଣସି ସୂଚନା ଦିଆଯାଇନାହିଁ । ତେଣୁ ଏହି ସବୁ ବିଷୟ ପଢ଼ିବା ବେଳେ ଭାବପ୍ରବଣ ନ ହେଲେ ହିଁ ଭଲ । ]

# ମା ଆଇଚ ... !!!

ପ୍ରଶାନ୍ତ କୁମାର ଭୁୟାଁ



ରୁକୁଣା ହାଲ୍ ପଟେ ଗୁଲୁଥିଲି; ଘିଁ ପେଗ୍ ଫଟଫଟିଆରେ ମାଡ଼ି ଆଇଲେ ଗଣେଷ। ପଛ ସିଇଟିରେ ଭୋଲାନାଥ ଶିବ ବଇଚେତ। ବାଘଛାଲଟା ଉଡୁଚ ଧୂଳରେ। ଅପୂରୁବ ସେ ଦୁରୁଶ। ଷଣ୍ଢ କାହିଁ ଆଉ ମୂଷା କୁଆଡ଼େ ଗଲ ! ହା...ରେ..ବାଃ; ହୋଣ୍ଡା ଗାଡ଼ିରେ ବୁଲୁଚେତ ବୋପାପୁଅ। ଆଉ ଟିକଏ ଆଗକୁ ପେଟ୍ରୋଲ୍ ଟାଙ୍କି ବାଙ୍କ ବୁଲଚ କ ନାଇଁ , ଶୁବଲ୍ ସେଇ ଶୁଣା ମାଡ଼।

ଚେଡ଼ିକ...ନେପିଡ଼ି...ଚେଡ଼ି... !

ଚେଡ଼ି...ଚେଡ଼ି...ଚେଡ଼ି.... !

ଚେଡ଼ିକ...ନେପିଡ଼ି...ଚେଡ଼ି... !

ଆଉ ତା'ସହ କଳାଶାଢ଼ି ପିନ୍ଧା ଅଣ୍ଡେରଟା ଗୋଟିଏ ହାତରେ ଧରଛ ରବର କଣ୍ଟେଇଟେ ଆଉ ଆର ହାତରେ ଭଙ୍ଗା ଦର୍ପଣ ଖଣ୍ଡେ। ଅଲଗ୍ ବାଳ ପିଠିଯାଙ୍କେ ପଡ଼ିଛ। ଆଉ ରକତ ଜଭ ମେଲେଇ ଧରଚ ସୁର...

ପିଲ୍ ଖାଇ ଡାହାଣୀ ଲୋ ...ତୋ ପିଲ୍‌କୁ ଦେଖେଇ ଦେ... !

ଇଏତ ପିଲ୍‌ଖାଇ ଡାଆଣୀ ବେଶ। ମନଟା କୁତୁକୁତୁ ହେଇଗଲା। ଅନେକ ବର୍ଷତଳେ ଯେତେବେଳେ ଏଇ ବେଶ ଦେଖେ ସେତେବେଳେ ତା ପଛେ ପଛେ ମୁଁ ବ ଘଣ୍ଟାଏ ବୁଲୁଥିଲା। ଦନ ସର ଆସିଲେ ଏଇ ପିଲ୍‌ଖାଇ ଡାଆଣୀ ବେକରେ ପାଞ୍ଚଦଶଟଙ୍କିଆ ମାଳ ପକେଇ ବୁଲେ। ଖରରେ ହାଲଆ ଲାଗିଲେ ଆଣ୍ଠୁ ଉପରକୁ ନୁଗା ଉଠେଇ ପାଣି ପେକେଟ୍ କଣି ପିଏ ଆଉ ତାପରେ ମେଘନା ବଡ଼ିରୁ ଧୂଆଁ ଉଡ଼ାଏ। ପଇସା ଗଣେ, ତାପରେ ପୁଣି ଆଗେଇ ଯାଏ ସେଇ ଦର୍ପଣ ଆଉ ରବର କଣ୍ଟେଇଟିକୁ ଧର।

ସେଇଦନ ବା ! ବରହଁପୁର ଯାଇଥେଲ; ମା ଆଇଚେତ ବେଲ ଶୁଣିଲ ତ ଆଉ ସମ୍ଭାଳ ହେଲାନ। କଚ୍ଛା ଟେକ ପେଗ୍ ଧାଇଁଲି। ଆମ ସାମଲ ଘର ପୁଅ କାଣ୍ଡକ୍ଟର ହେଇଚ; କଇଲ୍ ଦଦେଇ

ଗୋ ମୋ ସିଇଟିରେ ବସେ। ସିଧା ବରହଁପୁର ନେଲା। ହଞ୍ଜିଳକାଟୁରେ ଗ୍ଯ ପିଆଇଲା, ପାନ ଖୁଆଇଲା...କମାମ୍ ପକେଇ। ଶଳା, ରଜା ପିଲ୍ ଭଳଆ ଭେଣ୍ଡାଟା। ଦଲଦାରଆ ପିଲ୍ଟା। ଗେଟୁବଜାରରେ ଓହ୍ଲେଇଦେଲା। ହାତରେ ପଗ୍ଯଶେ ଦେଇ କଇଲା। ଦଦେଇ ଗୋ, ମନ ଭଙ୍ଗି ବୁଲେ। ଯେବେ ଇଛା ହେବ ଗାଁକୁ ଯିବୁ ବାହାର। ଗତ ବେଶୀ ବାହାରେ ରଇବୁନ ବା। ଘରକୁ ପଳ ଆସିବୁ ଗତରେ।

ମା ଆଇଚ ବେଇଲେ ମୁଁ ବରହଁପୁର ଆଇବ, ଏଇଟା ତ ଲଖଣଗାରର କଥା। ହଲପ କର କଉଚ। ଏବେ ଆଉ ବରହଁପୁର ଆଉ ସେବର ବରହଁପୁର ହେଇ ରଇନ ବା। ସେତେବେଳେ ଓ.ଆର.ଟି. ବସରେ ଡାକୁଆ ଡାଇଭର ସାଙ୍ଗେରେ ଆଉଥିଲ। ପୁରୁଣା ବାସ୍ଷ୍ଟାନରେ ଓହ୍ଲେଇଲେ ସିଧା ଉଡ୍ଡୁପି ହୁଟୁଲୁ। ପାରୁଶଟିଏ ଭଡ଼ି ଦେଇ, ବେପାର ବଣିଜ କରୁଥିଲ। ଆଉ ତାପରେ ଜ୍ୟୋତ ସିନମାରେ ବହ ଦେଖୁଥିଲ। ସେବର ବହ ଆଉ ଏବର ବହରେ ଢେରେ ଫରକ। ଆଜ କାଲର ସିନମା ବହ ହେଉ ବା ଗୀତନାଚ; ଆଉ ସେବର ରସ ନାଇଁବା !

ଗିରଜା ହୁଟୁଲୁ, ପିଢ଼ା ହୁଟୁଲୁ, ଏସ୍.ଏସ୍.ଭ.ଟି. ହାଲ, ଅଗେର୍ ବୁଲୁଥିଲୁ ସେବେ। ଜାଫଗ୍ନ ଜାର୍ଦା ପାନଟିଏ କଳରେ ପକେଇ ଦେଲେ ଆଉ ଚେତାଚବର ସବୁ ଭୁଲ୍ଯାଇ ଖାଲ ବୁଲୁଥିଲ ନା। ସେତେବେଳର ଭେଣ୍ଡା ରକତ। ଟକରମକର ହେଉଥିଲ୍ ହେଲେ ଆଜ ଆଉ ନାଇଁ ସେ ରଙ୍ଗଢଙ୍ଗ। ବରହଁପୁରର ହେଲେ ନାଇଁ ସେ ସୁଲଭପଣିଆ। ସବୁଠେ ଗହଳଚହଳ ଆଉ କେଉଁଥିରେ ହାତ ଦେନା କଉଚ। ଶଳା ସବୁ ସୁନାଦର। ମଣିଷ ଖାଇବ ନା ମରବ, ଭାବ ହେଉନ।

ଏଇ ଠାକୁରଣୀ ଯାତ୍ରା, ମେଢ଼, ବେଶ ଦେଖିବାର ସଉକଟା ରଇଚ। ସେଇଥି ପାଇଁ, ମା ଆଇଚ କଇଲେ ମୁଁ ଆଉଚ। ସିଏ ପର୍ ଜଗତମାତା। ଅନେଇ ଦେଲେ କରୁଣାକଟାକ୍ଷ ଢାଳ, ଏ ପାପୀ ଜୀବନ ପେର୍ ଆଗକୁ ଗ୍ଯଲୁଚ। ଠାକୁରଣୀ ଯାତ୍ରା ଆଇଲେ, ବଡ଼ ବଜାରରେ ଯାତ୍ରା ଆଉ ବେପାର ହୁ ହୁ ହେଇ ଗ୍ଯଲେ। ଦନରେ ହୁ..ହାଲର ଆଉ ଗତରେ ଲଚୁମାଳର ଝାଲର ମାଳ ସେଇ ନଡ଼ିଆ ଗୋର୍ଜୀ ଇଲ୍କାକୁ ଚକ୍ମିକ୍ କର ଦଏ ପର୍। ଦେଶୀବେହେର୍ ସାଇ ମା'ର ଆସ୍ଥାନ ହେଇଯାଏ। ଆଉ ସେଇଠୁ ଭକତ କଲ୍ ବାଲ୍ ଭକତ ଆଉ ଶକତ ଦେଖେଇଲ୍ ବାଲ୍ ଶକତ ଦେଖାଏ। ସାଇଯାକ ନଡ଼ିଆ, କଦଳୀ, ମନ୍ଦାର ମାଳ, ତୁଳସୀମାଳ, ଘିଅ ଦୀପ, ସୁନ୍ଦର ଚନ୍ଦନ ହଳଦୀରେ ଭରତ। କେତେ କଣୁଚ କଣ କେତେ ବକୁଚ ବକ। ମା' ପାଇଁ ବେଶ, ମା' ପାଇଁ ମାନସିକ; ମା ପାଇଁ ସବୁ ହୁଏ। ମା ବରଷ ବରଷ ଅନ୍ତରରେ

ଆସେ। ଉତ୍କଳ ସିନେମା ସାଇ ମନ୍ଦିରରୁ ବାହାରି ବୋପାଘରକୁ ଯାଏ ଦେଶୀ ବେହେରା ସାଇକୁ। ଏଇ ମା'ର ବୋପା ହେବାକୁ କେତେ ହୋ..ହଲ୍ଲା...କେଶୁ ସବୁ ହେଇଚି। ମଧ୍ୟସ୍ଥି ସଲାସୁତୁରା ପରେ ଏ ଲେଖା ଛଡ଼ିଚି। ମତେ ଗ୍ଟୁନିଆ ଲାଗେ, ଯେତେବେଳେ ଶୁଣେ ଯେ ମା'ର ବୋପା ହେବାକୁ ମଧ ଝଗଡ଼ା ଝାଟି। କି କଥା... ! ହେଲେବି ଦିନ, ମାସ, ବର୍ଷ, କାଳ ବିତି ଯାଉଛି। ଏଇ ବିଶ୍ବାସକୁ ନେଇ କୋର୍ଟ୍‌କେଶୁ ହେଉ ବା ବାଡ଼ିଆବାଡ଼ି; ମା ଆସେ। ଭକତ ସବୁ ଉଲୁସି ଉଠନ୍ତି। କମିଟି ଆଉ କାଲେକ୍ଟରୁ ମିଶି ମା'ର ଦିନ କାଳର ରହଣୀ ସ୍ଥିର ନିଶ୍ଚିତ କରନ୍ତି। ମା ଶୁଣେ, ଜାଣେ ହେଲେ କିଛି କହେ ନାହିଁ। ତାକୁ ଯେଉଁ ଦିନ ଆଣିଲେ ସେ ଆସେ ଆଉ ଯେଉଁ ଦିନ ଫେରାଇ ନେଲେ ସେଇ ଭକତ ଗହଣରେ ଫେରି ଯାଏ। ସତେ ଯେପରି ଏଇ ଜନସମୁଦ୍ରକୁ କହେ,

"ତୁମେ ମୋତେ ପଥରରୁ ଦେବୀ କରୁଛ, ମା'ରୁ ଝିଅ କରୁଛ। କର, ସେଥିରେ ମୋର ଯାଏ ଆସେ ନାହିଁ। ଯାହା ହେଲେ ବି ମୁଁ ତୁମ ମା।"

ଆଶୀଷ ଦିଏ କେବେ କେଉଁ ଗଛମୂଳ ପଥରରୁ ତ କେବେ କେଉଁ ପାହାଡ଼ କନ୍ଦରରୁ। ସିନ୍ଦୁର ବୋଳି ହୋଇ ବସେ। ଯେଉଁ ବେଶ ଦିଅ ସେଇ ବେଶରେ ସେ ଗୁଣୀ। ଆହେ...ମା ପରା। ତା'ର ଡିମାଣ୍ଡ କିଛି ନାହିଁ ବା। ମୁଁ ବି ମାକୁ ଭରସି ରହେ। କେବେ ଭାବେ ମା ଏସବୁ ସହୁଛି କିଆଁ ହେଲେ ପର କ୍ଷଣରେ ଭାବେ; ସିଏ ମା...ସିଏ କଣ ଭାବ ସହୁଛି ମୁଁ ବା କେମନ୍ତେ ଜାଣିବି। ଏ ସବୁ ଲୀଳା ମୋତେ ବୁଝା ପଡ଼େନି।

ହେଇଟି, ପୂଜା ହେଇ ମା'ର ଆସ୍ଥାନରୁ ବାହାରି ଆଉଚେତ ହଲେ ବାଘ। ଜଙ୍ଗଲିଆ ନାଇଁବା, ମଣିଷ ବାଘ। ତାପଛରେ ପଣେ ଲୋକ। ବାର୍‌ନିସିରେ ଦିହଯାକ ବୋଳି ହୁଏନ୍ତି ପଟାପଟା ହଳଦିଆ ଦାଗ ସବୁ। ଦିଟା ଗ୍ବୁଙ୍ଗୁ ଆଗରେ ପଛରେ। ଆଉ ତା ପଛରେ ପାଳବଡ଼ା ଧରି ଲୋକଟିଏ। ଗ୍ବୁଙ୍ଗୁ ଧୂମା ପଡ଼ିଗଲେ ପାଳନିଆଁରେ ତାଙ୍କୁ ଆଉଥରେ ଦମ୍‌ଦାର କରିବା ପାଇଁ। ବାଘବେଶବାଲା ଗଲା ଗୋଟିଏ ଦୋକାନକୁ। ହୁଙ୍କାରି ମାଇଲା। ଗ୍ବୁଙ୍ଗୁବାଲା ପୁରା ଜୋଶରେ ଧିକ୍‌ତା...ଧିକ୍‌ତା..ବଜେଇବାରେ ଲାଗିଛି। ବାଘନାଟ ଏକ ସୁନ୍ଦର କଳା। ଖାଲି ମାନସିକ କରି ବେଶ ପଡ଼ିଗଲେ କଣ ହେଇଯିବ କି ! ଗଡ଼ିବାର ଅଛି, ପଡ଼ିବାର ଅଛି। ପୂରା ବାଘ ଇଷ୍ଟାଇଲ୍‌ରେ ଡେଇଁବାରେ ଅଛି। ବାଘ ବେଶକୁ ବାଘ ପଇସା। ଶଳା...ଦେଖୁନୁ ଗଲା ଆଉ ପାଟିରେ ଶହେଟଙ୍କିଆ ନୋଟ୍‌ଟିଏ ଧରି ଫେରିଲା ସେଇଠୁ।

ପିଲାଦିନେ ସାଙ୍ଗଟିଏ କଉଥିଲା; ବାଘବେଶରେ ବେଶୀ ପଇସା ମିଳେ ବୋଲି କେତେଜଣ ମାନସିକ ନଥିଲେ ହେଲେ ବେଶ ପଡ଼ି ଗୁଡ଼ାଏ କଉଡ଼ି ଅରଜନ୍ତି। ତାହିଁରୁ କେତେ ମା ପାଖକୁ ଯାଏ

ଆଉ କେତେ ଯାଏ ଭଟିକୁ। ଏଇ ବେଶ ମଧ ବଡ଼ କଷ୍ଟ। ଦେହଯାକ ଗୁଞ୍ଜି ସେଥିରେ ପେଇଣ୍ଟିଙ୍ଗ୍ କରହୁଏ। ଦହ ଜଳେ ପୋଡ଼େ; ହେଲ୍ ସେଥିକୁ ବା ଧିଆନ କାହାର। ପାଞ୍ଚ ପଚଶି ମିଳବ ବୋଲତ ଏଇ ପୋଡ଼ା ପେଟର ନାଟ। ଦନଯାକର ଅରଜନ ଭଗ ଭଗ ହୁଏ। ଗୋଟିଏ ଯାଏ ଭେଷ ପକେଇଥିବା ଚତ୍ରାଳୟକୁ, ଆଉ ଭଗେ ଯାଏ ମା'ର ଆସ୍ଥାନକୁ। ଆଉ ଭଗଟିଏ ସାଙ୍ଗସାଥି ଭଟିବଟିକୁ। ଆଉ ତାପରେ ହୁଏତ ଯେଉଁ ଭଗ ରହେ ତା କଥା ନକହଲେ ଭଲ।

ଏବେ'ତ ଯାତର୍ ଗୁଲଚ; ଯାଏ ମା'କୁ ଆଖି ପୁରେଇ ଦେଖେ ଆସେ। ତା'ପରେ ଗାରେଇବ ଆଉର କେତେକଣ। ଆଉଦନେ... ! ! !

-ପ୍ରଭୁ

[କ୍ରମଶଃ]

## [ବ୍ରହ୍ମପୁରର ଠାକୁରାଣୀ ଯାତ୍ରା ଅବସରରେ]

[ଗାଉଁଲି କଥାର କୟଦଂଶ: ଅନେକ ସାହତ୍ୟବନ୍ଧୁଙ୍କ ସରଗ ହେତୁ ଏଇ କଥାଟି ଓଡ଼ିଶାର ଗାଁ ଗହଳରେ ବୋଲ୍ ଯାଉଥିବା ପ୍ରକାରେ ଲେଖା ହୋଇଅଛ;
ଏଇ କଥା ହୁଏତ କେଉଁ ଶବ୍ଦକୋଷରେ ନମିଳପାରେ ଅଥବା ଗାଁ ବାହାରେ ଶୁଣିବାକୁ ସ୍ୱପ୍ନ ହୋଇଥାଇ ପାରେ; ହେଲେ ଏଇ କଥା ଏବେବ ମୋ କର୍ଣ୍ଣଗହ୍ୱରରେ ଗୁଞ୍ଜେ।
ଅତ ମଧୁର ଲ୍ଗେ ସେଇ କଥା ସବୁ। ଜଣେ ମଫସଲଆ ମଣିଷର ମୁହଁରୁ ଇଂରଜୀ ଶବ୍ଦଗୁଡ଼ିକ ଶୁଣିଲେ ଠିକ୍ ସେହପର ଲ୍ଗେ ଯେପରକ କୁନପିଲ୍ଟିଏ ପ୍ରଥମଥର ପାଇଁ କଥା କହୁଛ।
ଠିକ୍ ଏଇ ଭବ ନେଇ ପାଠକେ ଏହାକୁ ଗ୍ରହଣ କରବେ। ଅଳମତବସ୍ତରେଣ... ! ! ! ]

**[ହଇଓ ପାଠୁଏ, ଏତକରେ ସରନ ହୋ; ଆଉର ଅଛ ବା।**

**ଏଇଟା ହେଲ୍ ଭୂୟାଁ ପେସାଲ୍।**

**ପଢୁଥା ଆଉ ହସି ହସି ଗଡୁଥା... ! ! !]**

ଫୋଟୋଗ୍ରାଫ୍ ଦେଖିବାପାଇଁ ଆମ ୱେବସାଇଟ୍‌କୁ ଆସନ୍ତୁ : aahwaan.com/bty15

ଆହ୍ୱାନର ଆଗାମୀ ସଂସ୍କରଣ ମଇ ମାସରେ ପ୍ରକାଶିତ ହେବ । ନିଜ ଦ୍ୱାରା ଲିଖିତ କବିତା ଓ କାହାଣୀ ଶୀଘ୍ର ଆମ ନିକଟକୁ ପଠାନ୍ତୁ ।

ଆପଣଙ୍କ ଲିଖିତ କବିତା, କାହାଣୀ, ଭ୍ରମଣ କାହାଣୀ, ଶିଶୁକଥା, ଜୀବନ କଥା, ଇତିହାସ, ରୋଷେଇ, ଘରକରଣା, ସ୍ୱାସ୍ଥ୍ୟ, ବ୍ୟଙ୍ଗ ଇତ୍ୟାଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ପଠାଇ ପାରିବେ ।

ଆମ ଇ-ମେଲ୍ ଠିକଣା :

# aahwaan@gmail.com

ଚିଠି ମାଧ୍ୟମରେ ଲେଖା ପ୍ରେରଣ କରିବା ଠିକଣା

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ସମ୍ପାଦକ, 'ଆହ୍ୱାନ ଇ-ପତ୍ରିକା'

ବିମାନଗର, ୨ୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା
ଫୋନ : ୯୦୪୦୯୮୫୪୬୩ / ୯୮୬୧୯୭୨୧୬୦

ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା । ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ । ବେଳେ ବେଳେ ପୂଜା ପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣମାନ ମଧ୍ୟ ପ୍ରକାଶିତ ହୁଏ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ ।

ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ । ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ, ଲେଖିକାମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ । ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକାମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।

ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ । ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।

ଲେଖକ ଲେଖିକାମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇପାରିବେ । ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ । ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବା ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।

ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ । ଆମେ ପରିବେଶ ପ୍ରଦୁଷଣ ବିରୋଧ କରୁ ।

ଆହ୍ୱାନ ଇ-ପତ୍ରିକାରେ ଲେଖା ପ୍ରକାଶିତ କରିବାପାଇଁ ଯଦି ଆପଣ ଇଚ୍ଛୁକ ତେବେ ନିଜ ଲିଖିତ କୃତିକୁ ଆପଣ ଆମ ନିକଟକୁ ପଠାନ୍ତୁ । ଯେହେତୁ ଏହି ପତ୍ରିକା ଇଣ୍ଟରନେଟରେ ପ୍ରକାଶିତ ହୁଏ ଏବଂ ପ୍ରତ୍ୟେକ ମାସରେ ଶହସ୍ରାଧିକ ଓଡ଼ିଆଙ୍କ କମ୍ପ୍ୟୁଟରରେ ଶୋଭାପାଏ ତେଣୁ ଏହି ପତ୍ରିକାପାଇଁ ଲେଖା ମଧ୍ୟ ଇଣ୍ଟର୍‌ନେଟ ମାଧ୍ୟମରେ ହିଁ ଗ୍ରହଣ କରାଯାଏ । ଯଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ

ଲେଖା ପଠାଇ ପାରିବେ ନାହିଁ, ତେବେ ଆପଣ ନିଜ ଲେଖା ଧଳା କାଗଜରେ ଗୋଟିଏ ପାର୍ଶ୍ୱରେ ନିର୍ମଳ ହସ୍ତାକ୍ଷରରେ ଲେଖି ଆମ ନିକଟକୁ ନିମ୍ନ ଠିକଣାରେ ପଠାଇ ପାରିବେ ।

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ
ବୀମା ନଗର - ୨ୟ ଗଳି
ଆମ୍ବପୁଆ, ବ୍ରହ୍ମପୁର - ୭୬୦୦୧୦
ଓଡ଼ିଶା, ଫୋନ୍: ୯୦୪୦୯୮୫୪୬୩ / ୯୮୬୧୦୬୨୧୬୦

ଯଦି ଆପଣ ଇଣ୍ଟର୍‌ନେଟ୍ ମାଧ୍ୟମରେ ଲେଖା ପଠାଇବାକୁ ଚାହାନ୍ତି ତେବେ ନିଜ ଲେଖାକୁ ଟାଇପ୍ (ଓଡ଼ିଆ ୟୁନିକୋଡ଼ ଫଣ୍ଟରେ ଟାଇପ୍ କରିବେ ଯଥା ଅପ୍ରାନ୍ତ ଓଡ଼ିଆ / ଗୁଗୁଲ୍ ଓଡ଼ିଆ ଟ୍ରାନ୍‌ସ୍‌ଲିଟେରେସନ୍) କରି Microsoft Word Document ରେ ଆମ ନିକଟକୁ ପଠାନ୍ତୁ, କିମ୍ବା ଲେଖାକୁ ସ୍କାନ୍ କରି ଜେପିଇଜି ଫର୍ମାଟରେ ଇମେଲ୍ Attachment କରି ପଠାନ୍ତୁ । ଆମ ଇ-ମେଲ୍ ଠିକଣା ହେଲା - aahwaan@gmail.com

ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।

ଧନ୍ୟବାଦ

**ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ**

ପ୍ରତିଷ୍ଠାତା-ସମ୍ପାଦକ, 'ଆହ୍ୱାନ'

**https://www.facebook.com/odiaparibar**

**ଜୟ ଓଡ଼ିଆ । ଜୟ ଓଡ଼ିଶା । ଜୟ ଜଗନ୍ନାଥ**

ଯଦି ଏହି ସଂସ୍କରଣରେ କୌଣସି ତ୍ରୁଟିଥାଏ ତାହେଲେ ସେଥିପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।